

# ହୃଦୟ ଭରା ମୋର ଗୀତରେ

ରସରାଜ ନାରାୟଣ ପ୍ରସାଦ ସିଂହ

Digitized by srujanika@gmail.com

# ହୃଦୟ ଭରା ମୋର ଗୀତରେ

ଗୀତ ରଚନା
ରସରାଜ ନାରାୟଣ ପ୍ରସାଦ ସିଂହ
ଦୂରଭାଷ : ୯୪୩୮୩୬୩୬୮୮

ପ୍ରକାଶନ
ରସରାଜ ଗୀତକୁଞ୍ଜ
ମଞ୍ଚେଶ୍ୱର ଶିଳ୍ପାଞ୍ଚଳ
ଭୁବନେଶ୍ୱର- ୭୫୧୦୧୦



ଅଳଙ୍କରଣ : ବିଭୁପ୍ରସୂନ

ପ୍ରଥମ ପ୍ରକାଶ : ରସରାଜ ଜୟନ୍ତୀ
୨୮, ମେ ୨୦୧୭

ମୁଦ୍ରଣ : ଦିବ୍ୟମୁଦ୍ରଣୀ
ପ୍ଲଟ ନଂ-୫୮/୬୦, ଦିବ୍ୟ ବିହାର
ସାମନ୍ତରାପୁର, ଭୁବନେଶ୍ୱର

ସତ୍ତ୍ୱ - ରସରାଜ ଗୀତିକୁଞ୍ଜ

ମୂଲ୍ୟ- ୧୦୦ଟଙ୍କା

**HRUDAYA VARA MORA GEETARE**

Written by :
**Rasaraj Narayan Prasad Singh**
Tel : 9438363688



Published by :
**Rasaraj Geetikunja**
A224-Mancheswar Industrial Estate
Bhubaneswar-751010

Design- **Bibhuprasuna**

1st Edition :28 May 2017

Print : **Divya Mudrani**
Plot no.58/60, Divya Vihar
Samantarapur, Bhubaneswar

Price : Rs. 100/-

*Digitized by srujanika@gmail.com*

## ଉତ୍ସର୍ଗ

ମତେ ଗୀତି କବିତାରେ ଛନ୍ଦ ଭରିବାକୁ
ଅନୁପ୍ରାଣିତ କରିଥିବା ଦୁଇ ବିଶିଷ୍ଟ ଛନ୍ଦ କବି
ମାୟାଧର ମାନସିଂହ ଓ
ରାଧାମୋହନ ଗଡ଼ନାୟକଙ୍କ
ଅମର ଆତ୍ମାକୁ ବିନମ୍ର ପ୍ରଣତି ନିବେଦନ...

- ହର୍ଷରାଜ

Digitized by srujanika@gmail.com

# ଏକ ନିଛକ ସତ

ହୃଦୟକୁ ଗୀତ କରିଦେଲେ- ହୃଦୟ ଆଉ ଦେହ ପଞ୍ଜୁରୀରେ ଆବଦ୍ଧ ହୋଇ ରହିପାରେନା । ଦେହ ଛାଡ଼ି ଉଡ଼ିଯାଏ । ମିଶିଯାଏ ଅନନ୍ତ ଆକାଶର ନୀଳିମାରେ ।

ହୃଦୟରେ ଗୀତ ଭରିଦେଲେ- ହୃଦୟର ସୀମିତ ଓ ସଂକୀର୍ଣ୍ଣ ସୀମା ମଧ୍ୟରେ ମଧ ତାହା ରହିପାରେନା । କ୍ଷତ ସୃଷ୍ଟି ହୁଏ- ହୃଦୟକୁ ପୀଡ଼ା ଦିଏ । ଡାକ୍ତରୀ ଭାଷାରେ ସେହି ପରିସ୍ଥିତିକୁ କହନ୍ତି-ହୃଦ୍‌ଘାତ ହେଲା । ସେଥିରୁ ମୁକ୍ତି ପାଇବା ବେଳେ ବେଳେ ସହଜ ହୁଏନା । ପ୍ରାଣପକ୍ଷୀ ଡେଣା ମେଲି ଉଡ଼ିଯାଏ । ଏ ଅବସ୍ଥା ଦେଖାଯାଏ- ସାଧାରଣତଃ ସାହିତ୍ୟିକ, କବି ଓ ଭାବୁକମାନଙ୍କଠାରେ । ମୋ ଜୀବନରେ ତା'ର କେତେକ ଚାକ୍ଷୁସ ଓ ବଳିଷ୍ଠ ପ୍ରମାଣ ରହିଛି ।

ପ୍ରଥମ ଉଦାହାରଣ- ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତି(ଭରଦ୍ୱାଜ) । ସାହିତ୍ୟ ଓ ସଂଗୀତ ଗବେଷଣାର ସେ ଜଣେ ଧୁରୀଣ ବ୍ୟକ୍ତିତ୍ୱ । ତାଙ୍କ ମୃତ୍ୟୁର ପୂର୍ବଦିନ ସଂଧ୍ୟାରେ ମୁଁ ତାଙ୍କ ସାଥୀରେ ଆଲୋଚନା କରିଥିଲି ଆକାଶବାଣୀର ସଂଗୀତ ରୂପକ 'ଭାଗବତୀ ଟୁଙ୍ଗୀ' ରଚନା ବିଷୟରେ । ସେ ଯୁଗରେ ଗ୍ରାମ୍ୟ ଅର୍ଥନୀତି, ସାଂସ୍କୃତିକ ପ୍ରେରଣା, ପବିତ୍ର ବୈବାହିକ ବନ୍ଧନ, କୃଷି ଓ ନ୍ୟାୟ ନିଶାପର କେନ୍ଦ୍ର ଥିଲା- ଭାଗବତୀ ଟୁଙ୍ଗୀ ସଂସ୍କୃତି । ଜଣେ ପ୍ରାଚୀନ ସଂସ୍କୃତିପ୍ରେମୀ ଭାବରେ ମତେ ସେ ଆବଶ୍ୟକୀୟ ପରାମର୍ଶ ଦେଇ ପରଦିନ ସଂଗୀତ ରୂପକର ରେକଡିଂ ପାଇଁ ଆକାଶବାଣୀ ଯିବାକୁ ନିର୍ଦ୍ଦେଶ ଦେଲେ ଏବଂ ସଂଗୀତ ରୂପକ ଭଲରେ ରେକଡିଂ ହେବାର

Digitized by srujanika@gmail.com

ଶୁଭକାମନା ଜଣାଇଲେ। ପରଦିନ ଅପରାହ୍ଣରେ ରେକର୍ଡିଂ ଚାଲିଥିବା ବେଳେ ଷ୍ଟୁଡିଓ ଭିତରେ ଖବର ପାଇଲି- ସେଦିନ ମଧ୍ୟାହ୍ନରେ ହୃଦ୍‌ଘାତରେ ସେ ଇହଲୀଳା ତ୍ୟାଗ କରିଛନ୍ତି। ରେକର୍ଡିଂର ଶେଷ ପର୍ଯ୍ୟାୟରେ ସେ ଦୁଃଖ ଭୁଲିବାର ନୁହେଁ। ପରେ ସର୍ବଭାରତୀୟ ସ୍ତରରେ ସେହି ସଂଗୀତରୂପକ ଦ୍ୱିତୀୟ ଶ୍ରେଷ୍ଠ ସ୍ଥାନ ଲାଭ କଲା। ସାଧାରଣତଃ ଭାବୁକ, ସାହିତ୍ୟିକ, କବି ଓ ଲେଖକମାନେ ଏହିପରି ହୃଦ୍‌ଘାତର ଶିକାର ହୁଅନ୍ତି।

ଅନ୍ୟ ଉଦାହରଣଟି ହେଲା ଶ୍ରୀ ଦେବେନ୍ଦ୍ର ଦାସ, ପ୍ରସିଦ୍ଧ ଗୀତିକାର। ତା'ଙ୍କ ପେଷା ଥିଲା ପୋଲିସ୍ ଚାକିରି ଆଉ ନିଶା ଗୀତ ରଚନା। ସୁଦକ୍ଷ ଶବ୍ଦ ଯୋଜନା ସହ ସେ ଚମତ୍କାର ଗୀତିକବିତା ଲେଖିଛନ୍ତି। ସେ ମଧ୍ୟ ବାର ବାର ହୃଦ୍‌ଘାତର ଶିକାର ହୋଇଛନ୍ତି। ଏବେ ବି ବଞ୍ଚିରହିଛନ୍ତି- କିନ୍ତୁ ସାବଲୀଳ ଜୀବନଯାପନ କରିପାରୁନାହାନ୍ତି।

ମୁଁ ମଧ୍ୟ ହୃଦୟରେ ଗୀତ ଭରିଦେଇ ହୃଦ୍‌ଘାତର ଶିକାର ହୋଇ ସଦ୍ୟ ଭୁବନେଶ୍ୱରର ଆପୋଲୋ ହସ୍‌ପିଟାଲରୁ ଫେରିଛି। ଏବେ ମଧ୍ୟ ଚିକିତ୍ସାଧୀନ ଅଛି।

ଏ ସବୁର କାରଣ ବା ନିରାକରଣ କିଛି ବି ସମ୍ଭବପର ନୁହେଁ। କେବଳ ବଞ୍ଚିବାଟା ବିଶ୍ୱନିୟନ୍ତାଙ୍କର ଇଚ୍ଛା ବୋଲି ବୁଝିବାକୁ ହେବ।

ଏହି ଗୀତିଗ୍ରନ୍ଥ ପ୍ରକାଶନ ଅବସରରେ ମୁଁ ଗୀତିକାର ରବି ମହାପାତ୍ର ଓ ସଂଗୀତ ସମୀକ୍ଷକ ସୂର୍ଯ୍ୟ ଦେଓଙ୍କ ଅବଦାନକୁ ସସ୍ନେହ ସ୍ମରଣ କରୁଛି।

Digitized by srujanika@gmail.com






Digitized by srujanika@gmail.com

Digitized by srujanika@gmail.com



ଏଇ ସଂସାର କେଡ଼େ ସୁନ୍ଦର
ସୁଖ ଦୁଃଖର ହସ କାନ୍ଦର
ଅନୁରାଗର ଅଭିମାନର
ଲାଗେ ସତେ ଏକ ମୀନାବଜାର ।।୦।।

ଏଠି ନୀଳ ଆକାଶ ଏଠି ଉଚ୍ଛୁଳା ହସ
ଏଠି ଫୁଲରେ ମହୁ ଏଠି କୋକିଳ କୁହୁ
ଏଠି ରୁପାର ଜହ୍ନ ଝରେ ସୁନା କିରଣ
ରୁପା ଖରାରେ ହସେ
ଆମ ସବୁଜ ବନ
ଲାଗେ ଚିତ୍ର ଭରା ମଧୁ ସମ୍ଭାର ।।୧।।

କେତେ ବଂଧୁଭରା ଏଇ ବସୁଧଂରା
ପ୍ରୀତି ବଂଧନରେ ଆମେ ଆତ୍ମହରା
ଏଠି ଶୀତ ବି ଅଛି ମନେ ଗୀତ ବି ଅଛି
ଏଠି ଗଳ୍ପ ଅଛି
ପୁଣି ଗଜଲ ଅଛି
ଏ ଯେ ଈଶ୍ୱର ହାତେ ଗଢ଼ା ପ୍ରୀତି ମନ୍ଦିର ।।୨।।



Digitized by srujanika@gmail.com



ଏ ଦେଶ ଭାରତ
ଏ ମାଟି ଅମୃତ
ଫୁଲର ରଂଗରେ
ଯା' ତନୁ ଚିତ୍ରିତ ।।୦।।

ଦେଶ ପାଇଁ ଆମ ସେନେହ ମମତା
ଦେଶ ହିତ ଲାଗି ଅହରହ ଚିନ୍ତା
ସମୀରେ ଯାହାର ସଂଗୀତ ।।୧।।

ଛଅଟି ଋତୁର ଏଠି ସମାହାର
ଗ୍ରୀଷ୍ମ ବରଷା ହେମନ୍ତ ଶୀତର
ପୁଣି ଋତୁରାଣୀ  ଶରତ ବସନ୍ତ ।।୨।।

ଗୀତା ବାଇବେଲ କୋରାନର ବାଣୀ
ମହାଭାରତର ଅମର କାହାଣୀ
ନୀତିବାଣୀ ଦିଏ ଇଂଗୀତ ।।୩।।

ଆମରି ଏ ଦେଶ ଭାରତ ବରଷ
ତାହାଠାରୁ କେହି ନାହିଁ ତ ସରସ
ଆମ ଜନ୍ମଭୂମି ଚିର ବନ୍ଦିତ ।।୪।।



Digitized by srujanika@gmail.com



ବଂଧୁରେ...
ମନ ନେ' - ମନ ଦେ'
ସ୍ନେହ ମମତାର ବିରଳ ମୋତିରେ
ମତେ ତୁ ସଜେଇ ଦେ...।।୦।।

ହୃଦୟ ଭିତରେ ସାଇତି ରଖିବୁ
ଦୁଃଖେ ଦରଦୀ ସୁଖେ ସୁଖୀ ହେବୁ
ଚପଳ ମନର ଗୋପନ ଗହୀରେ
ମତେ ତୁ ଲୁଚେଇ ଦେ...।।୧।।

ଭାଷାରେ ଭାଷାରେ ମୁଦା ଆଖିପତା
ସରାଗେ ସାଇତା ପୀରତି ବାରତା
କଥାସବୁ ତୋର ଗୀତରେ, ସୁରରେ
ମତେ ତୁ ଶୁଣେଇ ଦେ...।।୨।।

କୁଳୁ କୁଳୁ ତୋର ପ୍ରୀତି ନଈପାଣି
ମନର ଯମୁନା ବହୁଛି ଉଜାଣି
ସେଇ ଯମୁନାରେ ସ୍ନାହାନ କରେଇ
ଆପଣାର କରି ନେ...
ବଂଧୁରେ... ।।୩।।



Digitized by srujanika@gmail.com



ମହୁଲ ଫୁଲର ମହୁଆ ମହକେ
ଟଳମଳ ଜହ୍ନରାତି
ଏମିତି ରାତିରେ ମୋ ଛାତି ଭିତରେ
ଭାସିଯାଏ କିଛି ସ୍ମୃତି ।।୦।।

ଶାଳ ପିଆଶାଳ ଶାଖାରେ ପବନ
ଗାଇଯାଏ ବସି ଗୀତ
ଚକୋରୀକୁ ଚାହିଁ ଚକୋର ଡାକୁଛି
ଆସ ଆସ ପ୍ରାଣ ମିତ
ସେଦିନର ସ୍ନେହ ଆଜିର ବିରହ
କରତି ଦିଏ ମୋ ଛାତି ।।୧।।

ଅଳସୀ ପବନ ଆଜି ମୋ ଆଖିରେ
ଭରି ଦେଉଅଛି ନିଦ
କିଏ ବା ନଜାଣେ ଏଇ ଦୁନିଆଁରେ
ପ୍ରୀତି ବଡ଼ ପରମାଦ
ବେଦରଦୀ ପ୍ରିୟ ବଡ଼ ନିରିଦୟ
ତମେ'ତ ପୁରୁଷ ଜାତି ।।୨।।



Digitized by srujanika@gmail.com



ଯେବେ ନବ କଦମ୍ବ ଯୁଥୀର ଗନ୍ଧ
　　　　ସମୀରେ ସମୀରେ ଭରେ
କାଦମ୍ବିନୀ ଗୋ ନୀଳ ଅମ୍ବରେ
　　　　ଆସ ଭାସି ଅଭିସାରେ ।।୦।।

ଚପଳା ତୁମରି ଆଖିର ଇସାରା
　　　　ବକ୍ର ତୁମରି ବଂଧୁ
ଓଠରୁ ଝରେ ଗୋ ପ୍ରୀତିର ମଦିରା
　　　　ହୋଇ ନୀଳ ଜଳବିନ୍ଦୁ
ମଧୁମାଳତୀର ବଧୂବେଶ ଦେଖ
　　　　ମରତରେ ଚାହିଁ ଧୀରେ ।।୧।।

ପ୍ରୀତି ବିଳାସିନୀ ହେ ରମଣି-ମଣି
　　　　ନୀଳ ଆକାଶରେ ରହି
ନାଚି ଗୀତ ଗାଇ ମତେ ନିଅ କିଣି
　　　　ସୁରେ ତାଳେ ମନ ମୋହି
ମାଟିର କବି ମୁଁ କବିତାରେ ତୁମ
　　　　ରୂପ ବନ୍ଦନା କରେ ।।୨।।



Digitized by srujanika@gmail.com



କହ ନଦୀ ତୁ କାହାର
କୂଳ କହେ ତୁ ତାହାର
ବାଲି କହେ ତୁ ତାହାର
ଗଛ ବି କହେ ତାହାର
ମାଛ ବି କହେ ତାହାର
କହ ସତ ତୁ କାହାର ।।୦।।

ତୋ ବୁକେ ଲହରୀ ମାଳ ଉଠେରେ ବାଜି ସମୀର
ତୋ ବୁକେ ସୁନା ଇଲିଶି ଜାଲରେ ଧରେ ଧୀବର
ତୋ ବୁକେ ହଂସ ଖେଳେ ରୁପେଲି ମାଛ ପହଁରେ
ତୋ ଜଳ ଆଇନା ଦେହେ ଆକାଶ ମୁହଁ ଦେଖେରେ
କହ ନଦୀ ତୁ କାହାର
ଗଛର କିବା ମାଛର କୂଳର କିବା ବାଲିର ।।୧।।

ନଦୀ କହେ ମୁଁ କାହାର ନୁହେଁ ଗଛର ନୁହେଁ ମାଛର ନୁହେଁ
କୂଳର ନୁହେଁ ବାଲିର ନୁହେଁ ନୀଳ ଆକାଶ ଛାଇର ନୁହେଁ
ପାହାଡ଼ ବୁକୁ ଫଟାଇ ଦେଇ କୁଳୁ ଗୀତିରେ ଯାଏରେ ବହି
ହସି ହସାଇ ରସି ରସାଇ ପ୍ରିୟ ଜନର ମିଳନ ପାଇଁ
ଜୀବନେ ଖାଲି ଲକ୍ଷ୍ୟ ମୋର
ଏଡ଼ାଇ ବାଧା ବନ୍ଧନ
ମିଶିବି ନୀଳ ସାଗର ।।୨।।



Digitized by srujanika@gmail.com



ଆଷାଢ଼ରେ ଆଶାବରୀ ଗାଇ
ଏ ମନ ଯମୁନା ଯାଏ ବହି
ଅଭିମାନୀ ପ୍ରିୟା ପାଶେ ଯାଇ
କହେ ଆଗୋ ମାନମୟୀ ରାଇ
ତୁ ମୋ'ରି ପାଇଁ ମୁଁ ତୋ'ରି ପାଇଁ ।।୦।।

ଆକାଶରେ ମେଘ ଭାସି ଭାସି
ଅନୁରାଗେ ଚାହିଁ ଦିଏ ହସି
କହେ ଲିଭି ଗଲା ତାରା ଶଶୀ
ଫୁଲ ଶେଯ ହେଲା ତୋ'ର ବାସୀ
ଆସିଲୁନି ମତେ କଥା ଦେଇ
(ହେଲେ) ତୁ ମୋ'ରି ପାଇଁ ମୁଁ ତୋ'ରି ପାଇଁ ।।୧।।

ମତେ ଚାହିଁ କାନନ କେତକୀ
କହେ ରାତି କୁହୁକି କୁହୁକି
ଛାତି ଉଠେ ପୁଲକି ପୁଲକି
କୁଞ୍ଜବନ ଉଠୁଛି ମହକି
ଆସ ମତେ ଲାଗୁଛି ଏକାକୀ
ଦେଖ ରାତି ଯାଏ ପାହି ପାହି
ତୁ ମୋ'ରି ପାଇଁ ମୁଁ ତୋ'ରି ପାଇଁ।।୨।।



Digitized by srujanika@gmail.com



ଆମ ଗାଁ ଆକାଶେ        କଳା ମେଘ ଡାଳେ
କଳସୀ କଳସୀ ମହୁ
ଫଗୁଣେ ଫୁଲର        ହାଟ ବସିଯାଏ
କୋଇଲି ଡାକେରେ କୁହୁ ॥୦॥

ଜୋଛନା ରାତିରେ ଜହ୍ନକୁ ଦେଖି
କଇଁ ଫୁଲ ମାଗେ ପ୍ରୀତି
ଚକୋର ଚକୋରୀ ମିଳନ ଗୀତିରେ
ପୁଲକେ ରାତିର ଛାତି
ଛଳ ଛଳ ଜଳ ଭଉଁରୀର ସୁରେ
ନଦୀ ସାଜେ ନୂଆବୋହୂ ॥୧॥

କିଆ କେତକୀର ମହକେ ବିଭୋର
ସମୀର ଅତର ବିକେ
ପ୍ରେମୀ ଜନମନ ହୋଇ ଛନଛନ
ପୀରତି ପତର ଲେଖେ
ବିତିଯିବା ସେଇ ଉତଳା ବୟସ
ଫେରି କି ଆସିବ ଆଉ ॥୨॥



Digitized by srujanika@gmail.com



ଜ୍ୟେଷ୍ଠ ବୁକୁରେ ଶିହରଣ ଜାଗେ
ଆଷାଢ଼ ଆଲିଙ୍ଗନେ
ଜୀବନେ ଛନ୍ଦ ଭରି ଭରି ଯାଏ
ବାରିଦର ବରଷଣେ ।।୦।।

ନୀଳମେଘୀ ପାଟ ପିନ୍ଧେ ଆକାଶୀ କନ୍ୟା
ଶୀର୍ଣ୍ଣ ତଟିନୀ ବୁକୁରେ ଉଛୁଳେ ବନ୍ୟା
କୁସୁମ କୁମାରୀ ହୋଇଛି କବିତା
କାନନ କୁଂଜ ବନେ ।।୧।।

ଉଲ୍ଲାସେ ହସେ ଆକାଶେ ଚପଳା
ହୋଇ ମେଘମାଳା କଟୀର ମେଖଳା
ଶ୍ୟାମଳ ଧରଣୀ ସାଜେରେ ଜନନୀ
ଆଜି ଏହି ଶୁଭ କ୍ଷଣେ ।।୨।।

ମାଟିର କବି ମୁଁ ମନେ ମୋ କବିତା
କବିତାରେ କହେ କେତେ ମନକଥା
ବୁଝିବ କି କେହି ମୋ ସ୍ନେହ ମମତା
ଦରଦୀ ବଂଧୁ ଜଣେ ।।୩।।



Digitized by srujanika@gmail.com



କାଦମ୍ବିନୀ ଗୋ ସୁନ୍ଦର ତମ ବର୍ଣ୍ଣବିଭା
ଶ୍ୟାମଳ କାନନେ ସତେ ଦିଶ ତମେ
କି ମନଲୋଭା ।।୦।।

ନାରଙ୍ଗୀ ତନୁ
ଧବଳ କେଶର
ରୂପେ ଅପରୂପ
ଦିଶ ମନୋହର
କବିତାରେ ମୋର
ସାଜେ ମୁଁ ତମର
ଶ୍ୟାମଳ ଗଭା ।।୧।।

ଆକାଶେ ଉଦାସେ
ଧଳା ବକମାଳ
ଛୁଇଁଯାଏ ତମ
ରୂପ ସମ୍ଭାର
ତୁମରି ରୂପରେ
ଝଲସେ ତାହାର
ସ୍ନିଗ୍ଧ ଆଭା ।।୨।।



Digitized by srujanika@gmail.com



ବରଷା ମୋ ପ୍ରିୟତମ ଋତୁ
ଯେ ଋତୁରେ କୁଇ ଫୁଲ ଫୁଟେ
ନବ ଅନୁରାଗେ ମେଘ
ଶ୍ୟାମଳ ଧରାର
ବୁକେ ଲୋଟେ ॥୦॥

ସବୁଜ ଧରଣୀ ରାଣୀ
ମେଘର ଓଢ଼ଣୀ ଟାଣି
ନବ-କଦମ୍ବରେ ଶୋଭା
ସାଜି ଦିଶେ ମନଲୋଭା
ବାଉଳା ବତାସୀ ବାଆ
ବିଳାସୀ ଜନର
ମନ ଲୁଟେ ॥୧॥

ନବୀନ ନୀରଦ ମାଳା
ନୀଳ ନଭେ କରେ ଖେଳା
ତା' ବୁକୁରେ ବକମାଳା
ଦେଖି [illegible]
ବରଷା ବଧୂଟି ପାଇଁ
ଲେଖନୀରେ ନୂଆ
ଗୀତ ଛୁଟେ ॥୨॥



Digitized by srujanika@gmail.com



ମୁଁ ଥାଏ ଯେତେବେଳେ ଏକା ଏକା ଏକାନ୍ତରେ
ତମେ ଆସ ସେତେବେଳେ ବଉଦର ପାଟ ପିନ୍ଧି
ମେଘରେ ମେଘରେ
ସବୁତକ ନୀଳିମାକୁ
ବୋଲି ନେଇ ତମରି ତନୁରେ ।।୦।।

ଫଗୁଣର ଫୁଲ ହୋଇ ଗୁମ୍‌ସୁମ୍ ଖରାବେଳେ
ତମେ ଆସ ମହ ମହ ବାସନା ଭିତରେ
ଶରତ ଜହ୍ନ ରାତି ହୋଇ ରୁପା ମାଛକାତି
ତମେ ଆସ ଅଙ୍କାବଙ୍କା ନଈର ଛାତିରେ
ପଉଷର ପିଆଲାରେ ଥରଥର ଶୀତ ହୋଇ
ସପନରେ- ପାହାନ୍ତି ପହରେ ।।୧।।

ସରମରେ ମରି ଲାଜେ ତମେ ଆସ ଅଭିସାରେ
ଫୁଟି ପ୍ରୀତି ଶତଦଳ ହସେ ମନ ସରୋବରେ
ହେ ରୂପସୀ ଉର୍ବଶୀ ବରନାରୀ ମହିୟସୀ
ଯଉବନ ମହୁବନ ଧାରେ ।।୨।।



Digitized by srujanika@gmail.com



ଧାରା ଶ୍ରାବଣରେ ଶ୍ରାବଣୀ ଆସିଛି
ଘନ ଘୋର ଏଇ ବର୍ଷାରେ
ଶ୍ରାବଣୀକୁ ମୁହିଁ ଭଲ ପାଏ ବୋଲି
ମୋ ପ୍ରିୟା ଜଳୁଛି ଈର୍ଷାରେ ॥୦॥

ମେଘ ଡମ୍ବରୁ
ବଜାଏ ଅଶନି
ଶ୍ରାବଣୀ କାନ୍ଦେ
ବାହୁନି ବାହୁନି
ମନ୍ଦ୍ର ନାଦରେ
ମହୀରୁହ ଥରେ
ଲୁଚିଯାଏ ଧରା ଅଂଧାରେ ॥୧॥

ଶ୍ରାବଣୀ ବି ହସେ
ଚପଳା ହସରେ
ତମାଳ କୁଂଜେ
ଫୁଲର ଓଠରେ
ସାଧବ ବୋହୂର
ନାଲି ପଣତରେ
ଋତୁମତୀ ମାଟି ଗଂଧରେ ॥୨॥



Digitized by srujanika@gmail.com



ଦେଖ୍ ଦେଖ୍ ଶାଳବଣେ
ଶ୍ରାବଣର ବର୍ଷା
ମନେ ଜାଗେ ସନ୍ଦେହ-
ମନେ ଜାଗେ ଈର୍ଷା ।।୦।।

ତନ୍ୱୀ କିଶୋରୀଟିଏ
ଗୁଣୁ ଗୁଣୁ ନାଚିଯାଏ
ତା'ର ପଦ ନୂପୁରର
ଘୁମୁ ଝୁମୁ ମିଠା ସ୍ୱର
ଶୁଣି ତାକୁ ଲଭିବାକୁ
ମନେ ଜାଗେ ତୃଷା ।।୧।।

ମେଘର ମାଦଳ ବାଜେ
କେବେ ହସେ ଲାଜେ ଲାଜେ
ଶ୍ୟାମଳ ବରଣା ସିଏ
ସୁନାନାକୀ ଝିଅଟିଏ
କେବେ ଦିଶେ କେବେ ହୁଏ
କ୍ଷଣକେ ଅଦୃଶ୍ୟା ।।୨।।



Digitized by srujanika@gmail.com



ମେଘର ମାଟିର ଯୁଗଳବନ୍ଦୀ- ବରଷା
ଫୁଲକୁ ଫୁଟାଇ ମାଟି ମହକାଇ
ଧରାକୁ କରିବ ସୁରସା ॥୦॥

ସବୁଜ କେଦାର ଶ୍ୟାମଳ ଆଭାରେ
ଇନ୍ଦ୍ରଧନୁର ବର୍ଣ୍ଣ ବିଭାରେ
ହସିବ ଧରଣୀ ନଦୀ ଗିରି ଶୀରି
ଚାଷୀ କୂଳେ ଦେବ ଭରସା ॥୧॥

ମୋହିନୀ ମାୟାରେ ମୋହିବ ମରମ
ସଜାଇ ଦୃଶ୍ୟ ନୟନାଭିରାମ
ନବ କଦମ୍ବ ଯୁଥୀ ମାଳତୀରେ
ମୋ ପ୍ରିୟା ସାଜିବ ସୁବେଶା ॥୨॥

ପରିବେଶ ହେବ ଶାନ୍ତ ମଧୁର
ପଥ ଅତିକ୍ରମି ଶିଳା ବଂଧୁର
ବହିଯିବ ନଦୀ ମିଶିବ ବାରିଧି
ପ୍ରୀତି ବିଳାସିନୀ ସୁକେଶା ॥୩॥



Digitized by srujanika@gmail.com



ଶେଯ ସାରା ମୋର
ରଜନୀଗଂଧା ମହକ
ବାସର ରାତିରେ- ଆଜି ମୋ ଛାତିରେ
ପ୍ରୀତିର ନରମ ଡହକ ।।୦।।

ସେ' ତ ଆସିବେ- ପାଶେ ବସିବେ
ଚାଟୁ ବଚନେ ମୋ
ମନ ତୋଷିବେ
ମଥାରୁ ମୋହର ରେଶମୀ ଓଢ଼ଣି ଟାଣିବେ
ହସ କଉତୁକେ- କଥାରେ କରିବେ କୁହୁକ ।।୧।।

ଭରା ପୁଲକେ- ମନ ମହକେ
ମତେ ବୁଲାଇବେ
ପ୍ରୀତି ମୂଲକେ
ରାତି ପାହିଯିବ ନିମିଷେ ଆଖିର ପଲକେ
ସତେ ବାସର ରାତିର ସପନ ହେବକି ଅଲିକ ।।୨।।



Digitized by srujanika@gmail.com



ସେଇ ମେଘ ବରଣା
ଏକ ଗପ ଝରଣା
କହୁଥିଲେ ଆଖି ନାଚେ
କଥା ସରେନା... ||୦||

ସେ କହେ ଭଲ ପାଏ ମୁଁ କହେ- ହୁଁ
ସିଏ ଯେବେ ଦୂରେ ଯାଇ କହେ ମତେ-ଛୁଁ
ଛୁଇଁ ଦେଲେ ବହିଯାଏ
ହସ ଝରଣା ||୧||

ସରଳ ମନକୁ ମୋର କରେ ସେନେହ
ତାକୁ ବୁଝିବାଟା ହୁଏ ମତେ ଦୁରୁହ
ମୁଁ ତାର ଗପ ଶୁଣେ
ମନା କରେନା ... ||୨||



Digitized by srujanika@gmail.com

ହୃଦୟ ଭରା ମୋର ଗୀତରେ - ୨୬



ସେଇ ମୋର ପ୍ରିୟତମା
ହସରେ ଯା'ର କଅଁଳ ଘାସ ସବୁଜ ହୋଇଯାଏ
ସେଇ ମୋର ପ୍ରିୟତମା
ଯା' ମୁହଁ ଦେଖି ସରଗ ଶଶୀ
ଜୋଛନା ଢାଳିଯାଏ ।।୦।।

ଯା' ଓଠଧାରେ ମଲ୍ଲୀ ଫୁଟେ
ମନର ବନ ମହକି ଉଠେ
ଆଖି ପଲକେ ଜାଗେ ପୁଲକ
ମରମେ ଲାଗେ ପ୍ରୀତି ଝଲକ
ବାଳିକା ଥିବା କଳିକା ସବୁ
ଫୁଲେ ବଦଳି ଯାଏ ।।୧।।

କଜଳ କେଶେ ବଉଦ ଖେଳେ
ଶ୍ରମ ଝାଳରେ ମୁକୁତା ଝରେ
ତରକା ଅତି ପରଜାପତି
ଛୁଇଁଛୁଇଁକା ଫୁଲର ଛାତି
ଡେଣାରେ ବୋଳି ପରାଗ ଧୂଳି
ସରାଗେ ଉଡ଼ିଯାଏ ।।୨।।



Digitized by srujanika@gmail.com



ମଧୁ ବସନ୍ତେ-
ଦେଖ ଦେଖ- ହାୟ ହାୟ
ଚୋରା- ଚଇତାଳି
ଚଂପା କଳିରେ
ଚୁମ୍ବନ ଦେଇଯାଏ ॥୦॥

ଅନୂଢା କିଶୋରୀ ଅବୁଝା ଆଖିରେ
ଲାଜେ ଲାଜେ ଚାହେଁ
ଫୁଲ ସଖୀ ମେଳେ
ପାଗଳ ଭଅଁର ଆସି ସେତେବେଳେ
ଦୂରେ ରହି ଗୀତ ଗାଏ ॥୧॥

ଯେବେ ଏ ଧରାରେ ଆସେ ମଧୁମାସ
ଫୁଲ ଫଗୁଣର
ଚାଲେ ପ୍ରୀତିରାସ
ଏ ମଧୁ ଲଗନେ ପ୍ରିୟତମା କାନେ
ମନକଥା କହିଯାଏ ॥୨॥



Digitized by srujanika@gmail.com



ଦୁନିଆ ବଂଧୁମୟ  ଜୀବନ ରଙ୍ଗମୟ
ହୃଦୟ ପ୍ରେମମୟ ସୁବାସେ ମଧୁମୟ ।।୦।।

ସ୍ୱପ୍ନମୟ ଆମ
ପ୍ରଣୟ ପରିଭାଷା
ମାଧବୀ କୁଂଜେ ବିତେ
ପ୍ରୀତିର ମଧୁନିଶା
ଗୋପନ ଅଭିସାରେ
ନୂପୁର ଛନ୍ଦମୟ ।।୧।।

ବକୁଳ ବାସେ ଆଜି
ଆକୁଳ ସମୀରଣ
କଳିର କାନେ କାନେ
ଅଳିର ଗୁଂଜରଣ
ମିଳନ ବୀଣା ସୁରେ
ଏ ମନ ଗୀତିମୟ ।।୨।।

ସଖୀର ସଖା ଡାକେ
ପ୍ରୀତିର ଆବାହନ
ସେନେହ ସୁଧାଝରା
ମରମ ନିବେଦନ
ଯୁଗଳ ସୁରେ ଶୁଭେ
ପ୍ରୀତିର ଜୟ ଜୟ ।।୩।।



Digitized by srujanika@gmail.com



## ଶୂନ୍ୟ ଜୀବନେ ସପନ ଖୋଜୁଛି

Digitized by srujanika@gmail.com

Digitized by srujanika@gmail.com



ଶୂନ୍ୟ ଜୀବନେ ସପନ ଖୋଜୁଛି
ସମୟ ନଈର ଧାରେ
ନିଠୁର ହୁଅନା ଗୋ ନୀଳନୟନା
ଟିକେ ଆହା କହିବାରେ ।।୦।।

କେତେ ଯେ ବରଷା ବିତାଇ ଦେଇଛି
ବୁକୁରେ ବେଦନା ବହି
ସହି ପାରୁ ନାହିଁ ଦୁଃଖର ଭାରା
ହେଲେ କହି ପାରୁନାହିଁ
ବଂଚି ରହି ମୁଁ ବସି ରହେ ଚାହିଁ
ବେଦନା ସାଗର ତୀରେ ।।୧।।

ଭାବୁଛି ମୁଁ ଆଜି ଜୀବନଟା କିବା
ବିଳାପେ ବିଳାପେ ଭରା
ସବୁ କି ମାୟାର ମିଛ ବଂଧନ
ଘରକୁ ମଣୁଛି କାରା
କିବା ଲାଭ କହ ଜୀବନରେ ରହି
ଏମିତି ବଂଚିବାରେ ।।୨।।



Digitized by srujanika@gmail.com



ମିତରେ - ମିତରେ - ମିତରେ
ହୃଦୟ ଭରା ମୋର ଗୀତରେ
କେବେ ଫୁଲର ଫଗୁଣ
କେବେ ଧାରା ଶିରାବଣ
କେବେ ମାଘ ଛାତି ଥରା ଶୀତରେ ।।୦।।

କେବେ ରାକା ଜୋଛନାର ରାତି
କେବେ ମଧୁ ମଳୟ ଚଇତି
ଅଂଧାରେ କେବେ ଜାଗେ ଭୀତି
ଆଲୋକରେ ଝଲମଲ୍ ପ୍ରୀତି
ଭଲ ପାଇବାର ଅମୃତରେ ।।୧।।

କେବେ ଅବା ବିଳାସୀ ବସନ୍ତ
ଅସୁମାରୀ ଆଶାରେ ଅଶାନ୍ତ
ଦୁଃଖରେ କେବେ ଭାରାକ୍ରାନ୍ତ
କେବେ ଅବା ହସର ହସନ୍ତ
ଚହଲାଇ ଦିଏ ମୋର ଚିତ୍ତରେ ।।୨।।



Digitized by srujanika@gmail.com



ପ୍ରୀତିମୟୀ ନାରୀମାନେ
ଆସିଥିଲେ ମୋ ଜୀବନେ
ଝୁରେ ଆଜି ତାଙ୍କରି ମମତା
ସେଇମାନେ ମୋ ଅତୀତ ପ୍ରୀତି ମମତାର ଗୀତ
ସେଇମାନେ ହେଲେ ମୋର କବିତା ।।୦।।

ମୋ ଭଲ ପାଇବାର ପ୍ରଥମ ନାରୀ- ମୋ ମା
ଦ୍ୱିତୀୟ ହେଲା ମୋର ପ୍ରେମିକା
ତୃତୀୟ ହେଲା ମୋ ଘରଣୀ
ଏ ଜୀବନେ ଗୁରୁ ଯା'ର ଭୂମିକା
ଚତୁର୍ଥ ହେଲା ମୋର ଅତି ଅଲଅଳି ଝିଅ
ନାଁ ତା'ର ମ-ଧୁ-ମି-ତା ।।୧।।

ଏଇ ଚାରି ନାରୀ ମୋର ସପନ
ଏଇମାନେ ହେଲେ ମୋର ଜୀବନ
ବଇଶାଖୀ ଖରା ଦିନେ ଏଇମାନେ ମୋ ତନୁରେ
ଝଲକାଏ ସୁଶୀତଳ ପବନ
ଭରିଥିଲେ ମୋ ଜୀବନେ
ହୀରା, ନୀଳା, ମଣି ଆଉ ମୁକୁତା ।।୨।।



Digitized by srujanika@gmail.com



ହୃଦୟ କୁଂଜବନେ
କାହ୍ନୁ ରାଇ ନିତ୍ୟ ରାସଲୀଳା
ରାତ୍ରି ସାରା ମୁକୁଳା ଏଠି
ପ୍ରୀତିର ମଧୁଶାଳା ।।୦।।

କଳନାଦିନୀ ଯମୁନା ଗାଏ ପ୍ରଣୟ ଗୀତି
ରାତ୍ରି ସବୁ ସ୍ୱପ୍ନ ଭିଜା ଜହ୍ନରାତି
ମଳିନ ପଡ଼େ ନାହିଁ ଏଠି
ଶୁଭ୍ର ମଲ୍ଲୀମାଳା ।।୧।।

ବୃନ୍ଦା ଆଉ ବିଶାଖା ସଖୀ ରସି ରସାଇ
ଲଳିତା ନିଏ ପରିହାସରେ ମନକୁ ମୋହି
ମୋହନ ମୁରଲୀ ସୁରେ ପୁଲକ ଜାଗେ
ହୁଏରେ ମନ ଉତଳା ।।୨।।

ମୟୂର ନାଚେ ପୁଚ୍ଛ ଟେକି ସବୁଜ ଘାସେ
କୋକିଳ ଗାଏ କୁହୁ ଗୀତିକା ମନ ଉଲ୍ଲାସେ
ନିମିଷେ ଯାଏରେ ଭୁଲି ମରମେ ଯେତେ
ଦହନ କ୍ଷତ ଜ୍ୱାଳା ।।୩।।



Digitized by srujanika@gmail.com



ମନର ତଳେ ତଳେ ପ୍ରେମର ଦୋଳି ଖେଳେ ଜୀବନ
ମଧୁର ସୁରେ ସୁରେ ପ୍ରୀତିର ଗୀତି ଗାଏ ପବନ ।।୦।।

ମାୟାବୀ ଜୋଛନାରେ
ଭିଜେ ମୋ ଆଖିପତା
ତା' ସାଥେ ଭିଜିଯାଏ
କିଶୋରୀ ତନୁଲତା
ଫଗୁଣ ଫୁଲ ଫୁଟେ
ତନୁ ମୋ ଶିହରାଏ ସପନ ।।୧।।

ସପନ ଦେଖି ଦେଖି
ମୋ ପ୍ରେମ ଜିଇ ରହେ
ଆଶାରେ ଆଶାରେ ମୁଁ
ତୁମକୁ ଭଲ ପାଏ
ବାଜିବ ସାହାନାଇ
ଆସିବ କେବେ ମଧୁ ଲଗନ ।।୨।।

ନଉକା ବାହି ବାହି
ଆମ ଗାଁ' ଲୁହ ନଈ
ସୁଅକୁ କାଟି କାଟି
ଯିବି ମୁଁ ପାରି ହୋଇ
ତମରି ପ୍ରିୟଜନେ
କରିବେ ମତେ ବଧୂବରଣ ।।୩।।



Digitized by srujanika@gmail.com



ସେଇ ନାରୀ
ସୁନ୍ଦରୀ ଶୁଭଙ୍କରୀ
ଆଉ ସୁଲକ୍ଷଣା
ତାକୁ ପାଇବାକୁ କେତେ ଯେ ସପନ
ଦେଖି ଦେଖି ହେଲି ଆନମନା ।।୦।।

ଯା' ହସ କଲ୍ଲୋଳେ ଓଠ ଉପକୂଳେ
ସ୍ୱର୍ଣ୍ଣ କମଳ ଫୁଟେ
ଉଦାସୀ ଜୀବନ ବିଳାସୀ ସପନେ
କମନୀୟ ହୋଇ ଉଠେ
ସେଇ ଏକା ଜାଣେ ଜୀବନ ସଉଦା
ମନ ବିକା ଆଉ ମନ କିଣା ।।୧।।

ସେଇ ବରନାରୀ ଆଜି ଅଭିସାରୀ
ମୋ ପ୍ରୀତିର ଉପବନେ
ତା'ର ସ୍ୱାଗତିକା ସଂଗୀତ ଗାଏ
ଆଜି ମୁହିଁ ମନେ ପ୍ରାଣେ
ଜୀବନ ବେଦୀରେ ହୁଏ ଗୀତି ସୁରେ
ତାହାରି ସେନେହ ଆଳାପନା ।।୨।।



Digitized by srujanika@gmail.com



ହେ ସାଥୀ
ଏ ଚିକ୍‌ମିକ୍ ଜୋଛନାର ରାତି
କେତେବେଳେ ମନେ ହୁଏ
ଜୀବନଟା ହୋଇଯାଏ
ପ୍ରୀତିଭିଜା ମଧୁମୟ ଗୀତି
ନାହିଁ ଯା'ର ଇତି ।।୦।।

କେବେ ଧାରା ଶିରାବଣ
କେବେ ଫୁଲର ଫଗୁଣ
କେବେ ଶୀତ ସକାଳର ତାତି ।।୧।।

କେବେ ଶୀତଳ ଶିଶିର
କେବେ ବରଷା ନୂପୁର
କେବେ ବାଆ ଚପଳ ଚଇତି ।।୨।।

କେବେ ଫୁଲର ସୁଷମା
ରୂପେ ଗୁଣେ ଅନୁପମା
କେବେ ମଧୁ ମୁରଲୀର ଗୀତି ।।୩।।

କେବେ ରାକା ରଜନୀର
ଅଗଣିତ ତାରା ଫୁଲ
ତୁମେ ସାଜ ଲାବଣ୍ୟବତୀ ।।୪।।



Digitized by srujanika@gmail.com



ସ୍ନେହ ମମତାର ନୀଡ଼ଟିଏ ରଚିବାକୁ
ଯାଯାବର ମୁହିଁ
ସୁଖ ଖୋଜି ଯାଇ
କହିଲି ମୋହରି ପ୍ରିୟାକୁ ॥୦॥

ସେ କହିଲା ନାଇଁ - ଆମ ପାଇଁ ଏଇ
ମୁକୁଳା ଆକାଶ ଭଲ
ଉଛୁଳା ପବନ ଝରଣାର ଜଳ
ତରୁତଳ ବାସ ଭଲ
ସୁନା ଗହଣାରୁ ଫୁଲ ଗହଣାରେ
ଭଲ ଲାଗେ ସାଜିବାକୁ ॥୧॥

ବସି ନଈକୂଳେ ଜଳ ଆଇନାରେ
ଆମେ ଦେଖୁ ଆମ ଛବି
ମୁଁ ବାଏ ବଇଁଶୀ ସେ ନାଚେ ଘୁମୁରା
କୋଇଲିଟା ଉଠେ ରାବି
ମୁଁ ତାକୁ କହେ ରସରକେଲିର
ଗୀତ ପଦେ ଗାଇବାକୁ ॥୨॥



Digitized by srujanika@gmail.com



ସ୍ମୃତି - ସ୍ମୃତି - ସ୍ମୃତି
ସ୍ମୃତି ମୋର ଏକ ସୁନେଲି ଜହ୍ନ ରାତି
ସ୍ମୃତି ମୋର ଏକ ବିରହୀ ଚକୋର ଗୀତି ।।୦।।

ସ୍ମୃତି ମୋର ଏକ ଶ୍ରାବଣ ସଜଳ ମେଘ
ସ୍ମୃତି ମୋର ଏକ ସ୍ନେହ ମିଶା ଅନୁରାଗ
ମଧୁର ମିଳନ ମିଠା ମିଠା ଅନୁଭୂତି ।।୧।।

ସ୍ମୃତି ସଳିତା ମୋ ଜୀବନ ଆଲୋକ
ଧୂପ ହୋଇ ଜଳି ଭରିଛି ମହକ
କୁଳୁ କଳରବେ ଥରାଇ ଦେଇଛି ଛାତି ।।୨।।

ସ୍ମୃତି ମୋର ଏକ ଅପାଶୋରା ଅନୁଭବ
ସ୍ମୃତି ହେଲା ମୋର ଜୀବନର ବଇଭବ
ସ୍ମୃତିରେ ମରି ମୁଁ ସ୍ମୃତିରେ ଜିଇଛି ନିତି ।।୩।।



Digitized by srujanika@gmail.com



କେତେ ଯେ ଦୂରତା
ଆମରି ମଝିରେ
କଥାରେ ପାରୁନି କହି
ଆମେ ଦୂହେଁ ଅଛୁ ଉତ୍ତର ମେରୁ
ଦକ୍ଷିଣ ମେରୁ ହୋଇ ॥୦॥

ତମରି ତନୁରେ ଆଜି ଭରା ଖାଲି
ତୁହୀନର ଶିତଳତା
ମୋ ତନୁରେ ତାତି ବଇଶାଖି ଖରା
ମରୁଭୂମି ଉଷ୍ଣତା
ସରଳରେଖାର ପ୍ରାନ୍ତରେ ତୁମେ
ପ୍ରଥମରେ ଅଛି ମୁହିଁ ॥୧॥

ତମେ ତ ଆକାଶ ଦିଗ୍‌ବଳୟରେ
ସାଜିଛ ବିଜୁଳିକନ୍ୟା
ଝୁରେ ମୁଁ ତୁମକୁ ଆଶାରେ ଆଶାରେ
ଝରାଇ ଆଲୋକ ବନ୍ୟା
ଦିବସ ସୂର୍ଯ୍ୟ ଜଳେ ମୁଁ ପ୍ରଭାତେ
ତମେ ରାତି ନୀଳ କଇଁ ॥୨॥



Digitized by srujanika@gmail.com



କଲେ ନାହିଁ ଯେବେ ଆମେ ଦୁହେଁ ନୀଡ଼-ରଚନା
ଭଲ ପାଇବାର କରିବାନି ଆଉ ଛଳନା
ଚାଲ ହୋଇଯିବା ଏକ ପାଶେ ଆନ ଅଜଣା ॥୦॥

ଫୁଲ ଫୁଟୁଥିବ ତାରା ହସୁଥିବ
କାକରରେ ରାତି ଛାତି ଭିଜୁଥିବ
ମନର ବେଦନା କରିନେବା ଆମେ ଆପଣା ॥୧॥

ଶରତରେ ଫୁଟୁଥିବ ନୀଳକଇଁ
ରଜନୀଗଂଧା ରହିଥିବ ଚାହିଁ
ବିଦାୟର ଗୀତ ଗାଇବ ପାହାଡୀ ଝରଣା ॥୨॥

ବ୍ୟଥା ବେଦନାର ସଂଗୀତ ଗାଇ
କେତେ କାଳ ଆଉ ରହିବା ଅନାଇ
କାହିଁକି କରିବା ଏ ଜୀବନେ ଆଉ
କୃଷ୍ଣଚୂଡ଼ାର କାମନା ॥୩॥



Digitized by srujanika@gmail.com



ଫେରିଲା ଫଗୁଣ ଫେରିଲା ବରଷା
ଫେରି ତ ଆସିଲା ଶୀତ
ଫେରିଲାନି ସାଥୀ ପ୍ରୀତି ହେଲା ସ୍ମୃତି
ସ୍ମୃତି ପୁଣି ହେଲା ଗୀତ ।।୦।।

ଉଜୁଡ଼ିଗଲା ମୋ ସଜଡ଼ା ସହର
ଭାଜି ଭାଜିଗଲା ମେଘର ମହଲ
ସବୁଜ ଏ ମନ ହୋଇଲା ଧୂସର
ମଉଳିଲା ଯେତେ ଆଶାର ଆସର
କାହାକୁ କରିବି ଜୀବନେ ଆପଣା
କିଏ ସେ ଡାକିବ ମିତ ।।୧।।

ସାଥୀ ଡାକି ଦୂରେ ଚାଲିଗଲା ପରେ
ମନରୁ ତା' ଛବି ଲିଭାଇ ନପାରେ
ପ୍ରଥମ ପ୍ରେମର ଏଇ ପରିଣତି
କଣ୍ଠରୁ ଆଜି ଝରେ ହୋଇ ଗୀତି
ଯେବେ ସେ ଫେରିବ ଏ ତନୁ କି ଥିବ
ସୁକୋମଳ ନବନୀତ ।।୨।।



Digitized by srujanika@gmail.com



ମତେ ଭଲ ଲାଗେ ଶୁଭ୍ର ଶରତ
ଭସାମେଘ ନୀଳ ଆକାଶ
ନୀଳ କଇଁ ଆଉ ବନେ ଉପବନେ
କନକ ଚଂପା ସୁବାସ ।।୦।।

ଶାନ୍ତ ଶୀତଳ ଜୋଛନାର ଧାର
କାଶ ଫୁଲ ହସ ଲହରୀ
ନଦୀ କୂଳେ ବସି ଦେଖିବାକୁ ନୀଳ
ନୀଳିମାର ଜଳ ଭଉଁରୀ
ଶ୍ୟାମଳ କେଦାର ସକାଳ କାକର
ସୋରିଷ କ୍ଷେତର ହରଷ ।।୧।।

ଶିରି ଶିରି ଶୀତ ଗାଇଆଳ ଗୀତ
ପକ୍ଷୀର ମଧୁ କାକଳି
ମଧୁର ମୁରଲୀ ସୁର ଶୁଣି ଯାଏ
ମରମ ମୋହର ଚହଲି
ଏ ମଧୁରାତିରେ ସାଥୀର ପ୍ରୀତିରେ
ସରେନା ସପନ ବିଳାସ ।।୨।।



Digitized by srujanika@gmail.com



ଆଗୋ ମୋର ପ୍ରୀତିମୟ
ଆଜି ବି ରହିଛ ମୋ ପାଇଁ ତୁମେ
ଛଳ ଛଳ ଗୀତିମୟ ॥୦॥

ଆଜି ବି ମୋ ପାଶେ ତୁମେ ହସୁଅଛ
କୃଷ୍ଣଚୂଡ଼ାର ହସ
ତୁମେ କାମଦେବ ମୁଁ ରତିଦେବୀ
ପୁଷ୍ପଧନୁର ବେଶ
ଆମରି ଜୀବନ ଆମ ଯଉବନ
ଆଜି ବି ତ ମଧୁମୟ ॥୧॥

ତୁମରି ଆଖିରେ ବରଷା ରାତିରେ
ମୁଁ ଏକ ବିଜୁଳି କନ୍ୟା
ପ୍ରୀତି ଛଳ ଛଳ ତମ କବିତାର
ନାୟିକା ହୋଇ ମୁଁ ଧନ୍ୟା
କୋଣାରକୀ ନଟୀ ଶାଳଭଂଜିକା
ଏଇ ମୋର ପରିଚୟ ॥୨॥ •



Digitized by srujanika@gmail.com



ସେ' ଦିନେ ଆସିଥିଲା ମୋ' ପାଖକୁ
ମୋ କଅଁଳ ଛାତି ତଳ ଝାଉଁ ବଣକୁ
ନିରେଖି ମୁଁ ଦେଖୁଥିଲି ସେଇ ଝିଅକୁ
ଜହ୍ନ ଦେଖେ ଯଥା ଦେଖୁଥିଲି ନୀଳ କଇଁକୁ ।।୦।।

ତା' ହସ ଝୁଲି ଝୁଲି
ତା' ରୂପ ଝିଲି ମିଲି
ଝିଅଟା ଚୁଲବୁଲି
ହସିଲା ମଖମଲି
କହିଲା- ଭଲପାଅ - ତୁମେ କାହାକୁ ।।୧।।

କହିଲି ତାକୁ ମୁହିଁ
ଭଲ ତ' ପାଇ ନାହିଁ
କେହି ତ ଆସି ନାହିଁ
ବସିଛି ଚାହିଁ ଚାହିଁ
ଏଥର ପାଇବି ମୁଁ ଭଲ ତୁମକୁ ।।୨।।



Digitized by srujanika@gmail.com



ପ୍ରିୟା ଏକ ଫୁଲମୟ କବିତା
ସ୍ୱପ୍ନିଳ ଯଉବନ ଶିହରିତ ଆବାହନ
ପୁଲକିତ ପ୍ରୀତି ଆଉ ମମତା ।।୦।।

ଚଂପକ ବରଣୀ ସେ -
କଂପିତ ଓଠଧାରେ
ମୋହି ନେଲା ମନ ମୋର
କଥା ଆଉ କବିତାରେ
ମନ୍ଦ ମଧୁରେ ହସି
ଛନ୍ଦମୟୀ ରୂପସୀ
ସାଜିଲା ସେ ବିଳାସିନୀ ବନିତା ।।୧।।

ସେ ଏକ କୋମଳାଙ୍ଗୀ
କାମନାର କୁରଙ୍ଗୀ
କଳାବତୀ କୁଶଳା ସେ-
ଚଟୁଳ ଭ୍ରୁଭଙ୍ଗୀ
ସ୍ନିଗ୍ଧ ତାହରି ହସ
ମୁଗ୍ଧ ତା' ରୂପ ବାସ
ଅପସରୀ ରାଧା ସେ' କି ଲଳିତା ।।୨।।



Digitized by srujanika@gmail.com



ମଧୁ ମାଧବୀ ରାତି
ଫୁଟେ ମଧୁ ମାଲତୀ
ସାଥୀ ଗାଇଲେ ଗୀତି
ଗୀତିରୁ ଝରେ ପ୍ରୀତି ।।୦।।

ମନ ଯମୁନା କୂଳେ
କେଳି କଦମ୍ବ ମୂଳେ
ମାନସୀ ମନ ତଳେ
ମମତା ମଧୁ ଝରେ
ମଳୟ ମହକରେ ମରମେ ଜାଗେ ଭୀତି ।।୧।।

ଅବୁଝା ମନ ତଳେ
ଅଭୁଲା ଗୀତି ଝରେ
ଦୂରେ ରହିଲେ ସାଥୀ
ପ୍ରୀତି ପାଲଟେ ସ୍ମୃତି
ପୁରୁଣା ହେଲେ ସ୍ମୃତି ପ୍ରୀତିର ହୁଏ ଇତି ।।୨।।



Digitized by srujanika@gmail.com



ତମେ ଏମିତି ଏକ ଗୀତ
ଯାହା ନିତି ମୁଁ ଗାଇଯାଏ
ତମେ ଏମିତି ଏକ ମିତ
ଯା'ରେ ଜୀବନେ ଝୁରୁଥାଏ ॥୦॥

ତମେ ଏମିତି ଏକ ଜହ୍ନ
ଯାହା ନିତି ଜୋଛନା ଢାଳେ
ତମେ ଏମିତି ଏକ ଫୁଲ
ଯାହା ମନରେ ରଂଗ ବୋଳେ
ତମେ ଏମିତି ଏକ ବନ ଯହିଁ ନିତି କୋକିଳ ଗାଏ ॥୧॥

ତମେ ଏମିତି ଏକ ସ୍ୱପ୍ନ
ଯାହା ନିତି ରାତିରେ ଦେଖେ
ମନ ତୁଳିରେ ମରମ ତଳେ
ତମରି ଚିତ୍ର ଆଙ୍କେ
ସେ ଚିତ୍ର ଆଙ୍କି ଆଙ୍କି ମୋର ଜୀବନ ବିତି ଯାଏ ॥୨॥

ତମେ ଏମିତି ଏକ ଛନ୍ଦ
ଯାହା ବରଷା ଝୁରି ମରେ
ତମ ପଣତ ମଧୁ ଗଂଧ
ମୋର ମନ ଆକୁଳ କରେ
ମୋର ସବୁଜ ମନବନେ ତମେ ତୋଳିଛ ଘରଟିଏ ॥୩॥



Digitized by srujanika@gmail.com



ତମେ କହୁଛ - ଆଉ ମୁଁ ଶୁଣୁଛି
ତମ କଥା ସବୁ ମତେ ଗୀତ ଭଳି ଲାଗୁଛି ।।୦।।

ତମେ ଓଠରେ କୁହ
ମୁଁ ଆଖିରେ ଶୁଣେ
ତମ ରୂପ ବଇଭବ
ନାଚେ ନୟନେ
ତମ କଥା ମତେ ଭାରି ମିଠା ମିଠା ଲାଗୁଛି ।।୧।।

ଜହ୍ନ ମୁଁ ତମେ ନୀଳ-
ଜଳର କଇଁ
ଜୋଛନା ପରଶେ ଯାଅ
ମନକୁ ଛୁଇଁ
ତମ ପ୍ରୀତି ବରଷାରେ ନିତି ନିତି ଭିଜୁଛି ।।୨।।

ଦୁନିଆଁ ଆଖିରେ
ତୁମେ ଅପରିଚିତା
ତୁମକୁ ନେଇ ମୁଁ ଲେଖେ
କେତେ କବିତା
ଅପବାଦ ପାଇଲେ ବି ମତେ ସୁଖ ମିଳୁଛି ।।୩।।



Digitized by srujanika@gmail.com



ମୁଁ ଆଜି ଆଉ, ମୁଁ ହୋଇ ରହିନାହିଁ
ତମେ ବି' ତ ଆଉ
ତମେ ହୋଇ ରହିନାହଁ
ପ୍ରେମିକ ପ୍ରେମିକା ହୋଇ ବଦଳିଛି
ଏବେ ଆମ ପରିଚୟ ।।୦।।

ଜହ୍ନ ଜୋଛନା ତମେ
ଦୂର ନୀଳ ଆକାଶରେ
କୁମୁଦିନୀ ହୋଇ ମୁହିଁ
ଝୁରେ ନୀଳ ସରୋବରେ
ବିଳାପ ହେଲାଣି ଆମରି ବିଳାସ
ଲାଗେ ଯାହା ଦୁର୍ବହ ।।୧।।

ତମ ବିନା ମୁଁ ଯେ'
ଭାବିପାରେ ନାହିଁ ମତେ
ତମ ପାଶେ ମୋର
ଅଭିମାନ ମୂଲ କେତେ
ପ୍ରୀତି ରାଇଜରେ କେବେ ହେବ ଶେଷ
ଆମରି ଏ ଅଭିନୟ ।।୨।।



Digitized by srujanika@gmail.com

ହୃଦୟ ଭରା ମୋର ଗୀତରେ - ୫୨



Digitized by srujanika@gmail.com



ଦୁଃଖ ମୋହର ଦରଭୁଲା ଗୀତ
ଉଦାସିନୀ ଏକ ନାରୀ
ଦରଦୀ ମନର ଗୋପନ ଉଆସେ
ବସେ ଖାଲି ମନ ମାରି ।।୦।।

ଦିକି ଦିକି ଜଳା ସଂଜ ଦୀପ ସେ
ତୁଳସୀ ଚଉଁରା ମୂଳେ
ସଜଳ ନୟନୁ କଜଳ ଲିଭାଏ
ନୀରବ ଅଶ୍ରୁଜଳେ
ମୋ ଶୁଭ ମନାସୀ ତିଳେ ତିଳେ ସିଏ
ନିଜକୁ ଦେଇଛି ଜାଳି ।।୧।।

ବୟସର ବର ଓହଳରେ ବସି
ନିତି ନିତି ଖେଳେ ଦୋଳି
ମତେ ଦେଖି ସିଏ ମଥା ପୋତି ଦିଏ
ଝିଅ ଭାରି ସୁକୁମାରୀ
ସଂଧ୍ୟା ଆକାଶେ ବନ୍ଧ୍ୟା ବାଦଲ
ସମ ଖେଳେ ଲୁଚକାଳୀ ।।୨।।



Digitized by srujanika@gmail.com



ଦୁନିଆରେ ଅଛି ଯେତେ ଦୁଃଖ
ସବୁଠାରୁ ବଡ଼ ପ୍ରେମ ଦୁଃଖ
ଦୁନିଆରେ ଅଛି ଯେତେ ସୁଖ
ସବୁଠାରୁ ଭଲ ସଂଗ ସୁଖ ॥୦॥

ମୋ ପ୍ରୀତିର ବାସ ନାହିଁ
ମୋ ଶୋଷର ଶେଷ ନାହିଁ
ଜୀବନରେ ସେଥିପାଇଁ
ନିତି ମରି ଜିଏ ମୁହିଁ
ବଂଚିବା ପାଇଁ ତେଣୁ ବାଧାଦିଏ ଆଜି ମୋ ବିବେକ ॥୧॥

ସପନ ତ ସରେ ନାହିଁ
ନିତି ଆସେ ନୂଆ ହୋଇ
ତେଣୁ ତାକୁ ଆଜି ମୁହିଁ
ପାରୁନାହିଁ ଭୁଲିଯାଇ
ନିରିଜନ ମନ ବନେ ଖେଳି ବୁଲେ ସେ ଫୁଲ ମହକ ॥୨॥



Digitized by srujanika@gmail.com



ମୁଁ ଓଦା ହୁଏ ଶ୍ରାବଣ ରାତିର ସ୍ମୃତିରେ
ମୁଁ ଓଦା ହୁଏ ବିରହୀ ଚକୋର ଗୀତିରେ ॥୦॥

ଅବୁଝା ଆଖିରୁ
ଲୁହ ସବୁ ଯାଏ ଝରି
ବାଟବଣା ହୁଏ
ନଈ ବଢ଼ି ପାଣି ପରି
ମୁଁ ରହିଯାଏ ମୋ ହସ କାନ୍ଦ ଭିତରେ ॥୧॥

ଜୋଛନାର ରାତି
ହୋଇ ଉଠେ ମାୟାମୟ
ଜୟ କରି ପୁଣି
ବରିନିଏ ପରାଜୟ
ମୁଁ ଲୁଚି ରହେ ମୋ ହସ କାନ୍ଦ ଭିତରେ ॥୨॥

ଯେତେବେଳେ ମେଘ
ପାହାଡ଼ର ମଥା ଛୁଏଁ
ମୁଁ ଗାଇଯାଏ
ତମ ପାଇଁ ଗୀତଟିଏ
ଜୀବନ ବଂଶୀ ବିରହର ସୁରେ ଗୁମୁରେ ॥୩॥



Digitized by srujanika@gmail.com



ମୁଁ ଆଜି ଏକ ଉଦାସୀ ମେଘର ଛାଇ
ଝୁରି ଝରିଯାଏ ପ୍ରବାସୀ ପ୍ରିୟାର ପାଇଁ ।।୦।।

ମୁଁ ଓଦା ହୁଏ ଦୁଃଖର ବରଷାରେ
ମୁଁ ଜିଇ ରହେ ଖାଲି ତା'ର ଭରସାରେ
ମୋ ମନେ ବାଜେ ବେଦନାର ସାହାନାଇ ।।୧।।

ମୋ ଛାତି ଥରେ ମେଘ ଗୁରୁ ଗରଜନେ
ଚପଳା ଚମକେ ବାରିଦର ବରଷଣେ
ମତେ ଦେଖି ଦେଖି ପବନ ମାରୁଛି ହାଇ ।।୨।।

ମୁଁ ଆଜି ଏକ ଅଜଣା ପଥର ଯାତ୍ରୀ
ଦିନର ଆଲୋକ ଲିଭି ଲିଭି ଆସେ ରାତ୍ରୀ
ଗଲେ ପ୍ରୀତି ମାଳା ଝୁରେ ଅଭିଶାପ ହୋଇ ।।୩।।



Digitized by srujanika@gmail.com



ସ୍ମୃତି ମଣିଷକୁ ସିଝାଇ ସିଝାଇ ମାରେ
ସେଇଥି ପାଇଁକି ସ୍ମୃତିକୁ ମୁଁ ବେଶୀ ଡରେ ।।୦।।

ଜୀବନ ଆକାଶେ ସ୍ମୃତି ତାରା ଫୁଲ
କେବେ ସେ ହସାଏ କେବେ ନିଆଁ ଝୁଲ
ଗହନ ମନରେ ସ୍ମୃତିର ଦିପାଳୀ ଜଳେ ।।୧।।

ମିଳେ ନାହିଁ କେବେ ସ୍ମୃତିରୁ ମୁକତି
ସ୍ମୃତି ରହେ ହୋଇ ଜୀବନର ସାଥୀ
ପଲକ ପଡ଼ିଲେ ସ୍ମୃତି ଉଏଁ ମନ ତଳେ ।।୨।।

ଅପାଶୋରା ହୋଇ ସ୍ମୃତି ଯାଏ ରହି
ସ୍ମୃତି ବହିଯାଏ ଆଖି ଲୁହ ହୋଇ
ସ୍ମୃତି ଏକ ଝଡ଼ ବେଦନା ସାଗର ତୀରେ ।।୩।।



Digitized by srujanika@gmail.com



କହିପାରିବ କି ଖୁସି କିଣିବାକୁ
କେଉଁ ବଜାରକୁ ଯିବି
ଦଦରା ନାଆରେ କେମିତି ଜୀବନ
ଯମୁନାକୁ ପାରି ହେବି ॥୦॥

ଯୁକ୍ତିକୁ ନେଇ ରାଜନୀତି ହୁଏ
ତୋଳି ହୁଏ ନାହିଁ ଘର
ସେଇଥି ପାଇଁ ମୁଁ ଏଇ ଦୁନିଆଁରେ
ପାଲଟିଛି ଯାଯାବର
ଯାତନାରେ ଭରା ଜୀବନର ଭାର
କେତେ ସହି ରହିଥିବି ॥୧॥

କଅଁଳା ବାଛୁରୀ ପରି ଛନ ଛନ
ଦିନ ସବୁ ଗଲା ଡେଇଁ
ସୁଖୀ ହେବା ପାଇଁ ଖାଲି ଚାହିଁ ଚାହିଁ
ସୁଖକୁ ଭେଟିଲି ନାହିଁ
ଦୁଃଖ ଲହଡ଼ି ଦେଖ ଆସେ ମାଡ଼ି
ଗାଇ ଭୀମ ଭଇରବୀ ॥୨॥



Digitized by srujanika@gmail.com



ମୁଁ ଥିଲି ଦିନେ ତମ ପାଇଁ ଏକ
ଝିଲି ମିଲି ଶୀତ ସକାଳ
ବୁଝେନା କାହିଁକି ଆଜି ହେଲି ମୁହିଁ
କିଟିମିଟି କଳା ଅନ୍ଧାର ॥୦॥

ତମେ ଖୋଜୁଥିଲ ବତୀଘରଟିଏ
ଦରଦୀ ମନର ଆଶ୍ରୟଟିଏ
ଜୀବନର ଯହିଁ ରଂଗ ବଦଳେ
ସାର୍ଥକ ହୁଏ ସ୍ୱପ୍ନର ॥୧॥

ଦେହ ଆଉ ଦାହ ଦୁଃଖ ମଝିରେ
ଚାଲିଛି ଆଜି ମୁଁ ମରୁ ପ୍ରାନ୍ତରେ
ଶ୍ୟାମଳିମା ଟିକେ ପାଇ ଜୀବନକୁ
କରିବାକୁ ଚିର ସୁନ୍ଦର ॥୨॥



Digitized by srujanika@gmail.com



ଲୁହ ଲୁହ ନୁହେଁ
ଲୁହ ହେଲା ଏକ ବ୍ୟଥାର ନୀରବ ଭାଷା
ଲୁହ ଝରିଯାଏ ମଣିଷ ମନରୁ
ଲିଭିଲେ ସକଳ ଆଶା ॥୦॥

ସିଏ ହେଲା ମୋର ଲୁହର ସଉଦାଗର
ହସ ଲିଭିଗଲା ଜୀବନରେ ଯେବେ
କଲା ମତେ ସାତପର
ବତୁରା ମନରୁ ଉତୁରି ଗଲା ମୋ
ଭଲ ପାଇବା ନିଶା ॥୧॥

ମଣିଷ ଜୀବନେ ଲୁହ ତ ଅମୂଲ ମୂଲ
ଭଲ ପାଇବାର ଜୀବନଟା ହେଲା
ମେଘ ବିଜୁଳିର ଖେଳ
ପ୍ରୀତି ପାରାବାରେ ଭାସୁଛି ମୋ ତରୀ
ହରାଇ ସକଳ ଦିଶା ॥୨॥



Digitized by srujanika@gmail.com



ବଂଧୁ... ... ଆଜି ମୁଁ ଏକା
ମାୟାବିନୀ ମହାନଗରୀରେ ଭରା
ମିଠା ମିଠା ମରୀଚିକା
ମମତାର ମଧୁ ଝରେ ନାହିଁ ଆଉ
ପୀରତି ରଂଗ ଫିକା ।।୦।।

ଭାବିଥିଲି ଦିନେ ଲେଖିବି ଜୀବନେ
କୃଷ୍ଣଚୂଡ଼ାର ଗୀତ
ଶିଶିର ହକଲା ସକାଳ ସରିଛି
ସଂଧ୍ୟା ଯେ ଉପଗତ
ରଂଗଣୀ ରାତି ରଂଗସଭାରେ
ଡାକିବେନି କେହି ସଖା ।।୧।।

ନୟନରେ ନାହିଁ ପ୍ରୀତିର କଜଳ
ମନରୁ ହଜିଛି ସୁର
ଅଛି ଯାହା ଖାଲି ଜୀବନରେ ଭରା
ଶୂନ୍ୟତା ହାହାକାର
ମତେ କରି ପର ଗଲା ବହୁଦୂର
ମୋ ମନର ମାଳବିକା ।।୨।।



Digitized by srujanika@gmail.com

ହୃଦୟ ଭରା ମୋର ଗୀତରେ - ୬୨



ପତ୍ର ନୁହେଁ ସେ ପ୍ରଥମ ପ୍ରୀତିର ସ୍ୱାକ୍ଷର
ଉପହାର ତାର ହୀରା ନୀଳା ସମ
କେତୋଟି ଅଭୁଲା ଅକ୍ଷର ।।୦।।

ଦେହ ଆଉ ଦାହ ମଝିରେ ବିରହ
ତା' ପ୍ରେମର ପରିଭାଷା
ନେଇ ଆକାଂକ୍ଷା କରେ ପ୍ରତୀକ୍ଷା
ମନେ ମିଳନର ଆଶା
କେତେ ଯେ ଢାଳିଛି ନୀରବେ ମୋ ପ୍ରିୟା
ଘନ ନିଃଶ୍ୱାସ ବକ୍ଷର ।।୧।।

ବେଦନାରେ ଭିଜି ଲୁହରେ ଲେଖିଛି
ବେପଥୁମତୀ ସେ ବାଳିକା
ଅନୁରାଗ ଭରା ପ୍ରୀତିର ପତ୍ର
ପୁଷ୍ପିତା ପ୍ରୀତି କଳିକା
ମନରେ ବହୁଛି ଅହରହ ତା'ର
ପ୍ରଣୟର ନୀଳ ନିର୍ଝର ।।୨।।



Digitized by srujanika@gmail.com



ତୁମେ ଶରତ ଋତୁର ନଈ
ମୋର ଜୀବନରେ ଗଲ ବହି
ଆଜି ରହିଗଲ ସ୍ମୃତି ହୋଇ
ମୁଁ ରହିଲି ଝୁରିବା ପାଇଁ ॥୦॥

ବେଦନା ବଂଶୀ ସୁରେ
ଆଜି ଅତୀତକୁ ବସି ଝୁରେ
କାହାକୁ ପାରେନା କହି
ମୋର ରାହା ନାହିଁ ସାହା ନାହିଁ ॥୧॥

ଉଷର ବୁକୁରେ ମୋର
କବିତାର ନିର୍ଝର
କେମିତି ଝରିବ କୁହ
ସେ' ତ ଯାଇଛି ଶୁଷ୍କ ହୋଇ ॥୨॥



Digitized by srujanika@gmail.com

ହୃଦୟ ଭରା ମୋର ଗୀତରେ - ୬୪



ମୁଁ ଜଳିଗଲି-ଜଳିଗଲି - ଜଳିଗଲି,
ବିରହର ଶୀତଳ ନିଆଁରେ
ମୁଁ ହାରିଗଲି ହାରି ଗଲି - ହାରିଗଲି
ମୋ'ର ପ୍ରେମ ଦୁନିଆଁରେ ।।୦।।

ସିଏ ଥିଲେ ପାଶେ ମୁଁ ହସୁଥିଲି
ସିଏ ଦୂରେ ଗଲେ ମୁଁ ଝୁରୁଥିଲି
ତା' ରୂପଛବି ତା' କଥାଭାଷା ତା' ରାଗରୁଷା
ମୁଁ ଦେଖୁଥିଲି ସପନରେ ।।୧।।

କିଛି ହଜିଗଲେ କିଛି ମିଳେ ବୋଲି
ନିଜକୁ ହଜାଇ ତାକୁ ଖୋଜୁଥିଲି
ସେ ଦୂରେ ଗଲା - ଭୁଲିଗଲା - ମତେ ଭୁଲିଗଲା
ଦାଗ ରଖିଗଲା - ମୋ ଛାତିରେ ।।୨।।



Digitized by srujanika@gmail.com



ପ୍ରେମ
ସେ ଯେ ତ୍ୟାଗର ଅନ୍ୟ ନାମ
ଜୀବନରେ ତ୍ୟାଗ କରି ନାହିଁ ଯିଏ
ସିଏ କି କରିବ ପ୍ରେମ ।।୦।।

ଏ ଯୁଗରେ ପ୍ରେମ ହୁଏ ଯାହା ଖାଲି ଧନ ମାନ ଯଶ ପାଇଁ
ସ୍ୱାର୍ଥ ରହିଲେ ପ୍ରେମର ସାଥୀରେ ପ୍ରେମର ଅର୍ଥ ନାହିଁ
ହୃଦୟ ସାଥୀରେ ହୃଦୟ ମିଶିଲେ
ପ୍ରେମ ଚିର ଅନୁପମ ।।୧।।

ଲଇଲା ମଜନୁ ଶିରି ଫରିହାଦ ସଲିମ ଅନାରକଲି
କେଦାର ଗଉରୀ ପ୍ରେମ ଇତିହାସ କେହି କି ପାରିବ ଭୁଲି
ବୃନ୍ଦାବନର କଦମ୍ବ ବନ
ସ୍ମୃତି ଆଜି ରାଇ ଶ୍ୟାମ ।।୨।।

ପ୍ରେମ ହେଲା ଏକ ଶୀତ ସକାଳର ସଜଳ କାକର ବିନ୍ଦୁ
ମାନ ଅଭିମାନ ରାଗ ଅନୁରାଗେ ବରିବା ଜୀବନେ ବନ୍ଧୁ
ମନ ମନ୍ଦିରେ ପ୍ରେମ ପୂଜାଫୁଲ
ପବିତ୍ର ମନୋରମ ।।୩।।



Digitized by srujanika@gmail.com



ଦୁଃଖର ରଂଗ କେମିତି
ଲୁହର ସ୍ୱାଦ କେମିତି
ତମେ ଦେଖିନା - ତମେ ଜାଣିନା
ତମେ ଶୁଣିନା-ହେଲେ ମୁଁ ଜାଣିଛି
ତେଣୁ ମୁଁ କବି ହୋଇଛି
ଗୀତ ଲେଖୁଛି - ଆଉ ଗୀତ ଗାଉଛି ।।୦।।

ସୁଖୀ ନାମେ ଯେ ଝିଅ ମୋ ପାଶେ ଆସିଥିଲା
ମତେ ସେ ଭଲ ପାଇଲା ପ୍ରେମର ଗପ କହିଲା
ରୂପର ଗରବରେ ଛଳନା କରି ଶେଷେ ଚାଲିଗଲା
ଗୋଟାଏ ଗ୍ରହ ଗଲା
ଭାବିଲି ଏଥର ମୁଁ ବଂଚିଯାଇଛି ।।୧।।

ସମୟ ଗଡ଼ି ଗଡ଼ି - ମୋ ପାଶେ ଠିଆ ହେଲା
ଦୁଃଖୀ ନାମେ ଝିଅ ଯେବେ ମୋ ଦେଖା ହେଲା
ସେ ଝିଅ ଲୁହ ଢାଳି ମତେ ଆପଣା କଲା
ଲୁହର ସ୍ୱାଦ ଚାଖି ସୁଖର ରଂଗ ମାଖି
ତା' ସାଥେ ଘର ତୋଳିଛି
ଆଜି ମୁଁ ବଂଚି ରହିଛି
ତା' ପାଇଁ କବି ହୋଇଛି
ତା' ଲାଗି ଗୀତ ଲେଖୁଛି ।।୨।।



Digitized by srujanika@gmail.com



ଏଇ ଦୁନିଆଁରେ ଜଣେ କେହି ନାହିଁ
ଦୁଃଖ ଯାହାର ନାହିଁ
ସୁଖ ତ କ୍ଷଣିକ ଆସି ଚାଲିଯାଏ
ଦୁଃଖ ଯେ ଚରାଭୂଇଁ ॥୦॥

ବେଦନା ବିଧୁର ଜୀବନେ କିଏ ସେ
ସୁଖର ସପନ ଦେଖେ
ଗୁରୁ ଗିରିଷମ ସହି ଖୋଜିବୁଲେ
ବରଷାକୁ ବଇଶାଖେ
ଦୁରୁବହ ହେଲା ଦୁଃଖର ଭାର ଆଉ ତ ପାରେନା ସହି ॥୧॥

ବିଳାପ ଆଜି ମୋ ବେଦନା ବିଳାସ
ଦୁଃଖ ମୋହରି ସଖା
ସୁଖ ନିମିଷକ ଦୁଃଖ ଜୀବନେ
ବାରବାର ଦିଏ ଦେଖା
ସିଏ ମୋ ସୋଦର ତାହା ବିନା ମୋର ଆଉ କେ ବଂଧୁ ନାହିଁ ॥୨॥



Digitized by srujanika@gmail.com

• ହୃଦୟ ଭରା ମୋର ଗୀତରେ - ୬୮



ମୁଁ ଶୋଇଯିବି ରାତିସାରା ଆଜି
ସ୍ୱପ୍ନ ସାଉଁଟିବାକୁ
ଜୀବନରେ ଯିଏ ଆସିନାହିଁ ତାକୁ
ସ୍ୱପ୍ନରେ ଭେଟିବାକୁ ।।୦।।

ରାତି ଜଗା ପକ୍ଷୀ କହିଛି ମୋ' କାନେ
ଜୀବନରେ ତୋ'ର ଆସିବ ସେ ଦିନେ
ଆସିଲାନି ଦିନେ ଭାବୁଛି ସେ ରାତି
ସପନରେ ଆସିବାକୁ ।।୧।।

ସ୍ୱପ୍ନରେ ଦେଖା ସେଇ ରାଜଜେମା
ସୁଷମାର ଯା'ର ନାହିଁ ତ ଉପମା
ବର୍ଣ୍ଣ ଯାହାର ସ୍ୱର୍ଣ୍ଣ କମଳ
ମନ ତା'ର କିଣିବାକୁ ।।୨।।



Digitized by srujanika@gmail.com



ଚାହିଁଛି ନୀରବେ ଆକାଶେ
ଆଗୋ ମଉସୁମୀ ମୁଁ ଯେ ମରୁଭୂମି
କେବେ ଯିବ ତୁମେ ମୋର ବୁକୁ ଚୁମି
ମନ ଭରିଯାଏ ଉଦାସେ ।।୦।।

ବୁକୁରେ ବିଳାପ ସାହାନାଇ ବାଜେ
ସାହାହୀନ ହୋଇ ଆହା ଟିକେ ଖୋଜେ
ନୟନେ ଲୋତକ ବରଷେ ।।୧।।

ବୁକୁରେ ଟିକିଏ ଶ୍ୟାମଳିମା ପାଇଁ
ତୃଷିତ ନୟନେ ରହିଛି ଅନାଇଁ
ସେହି ଶୁଭବେଳା ନ ଆସେ ।।୨।।

ସଜଳ ଆଶାର କଜଳ ଲଗାଇ
କେତେ କାଳ ଆଉ ରହିଥିବି ଚାହିଁ
ବିଳାପରେ ମନ ବିଳସେ ।।୩।।



Digitized by srujanika@gmail.com

ହୃଦୟ ଭରା ମୋର ଗୀତରେ - ୭୦



ବୟସର ମଧୁମାସରେ
ବିଳାସୀ ମନ ମୋ ଉଡ଼ି ଉଡ଼ି ଯାଏ
ଫୁଲ ଫଗୁଣର ରାସରେ ॥୦॥

ବୁକୁରେ ମୋହର ବଧୂ ନିରୁପମା
ବାନ୍ଧଛି ସ୍ନେହ ନୀଡ଼ଟିଏ ବାମା
ମନ ମଜିଯାଏ ଦିବସ ରଜନୀ
ରାଜଜେମା ପ୍ରୀତି ରାସରେ ॥୧॥

ବିଧୁବଦନାର ବନ୍ଦନା କରି
ବିତୁଛି ସଂଜ ସକାଳ ମୋହରି
ରହି ଉଜାଗର ଜାଳୁଛି ଜାଗର
କିଛି ଲୁହ କିଛି ହସରେ ॥୨॥



Digitized by srujanika@gmail.com



ଏ ଜୀବନ ଚଲାପଥେ ଥିଲା,
ଅନେକ ମାଧବୀ ରାତି - ମଧୁପର ମେଳା
ଯଉବନ ମହୁବନେ ତରୁଣୀର ଖେଳା
ତେଣୁ ଜୀବନର ନାମ ଦେଲି ମଧୁଶାଳା ।।୦।।

ରଂଗୀନ ଉପବନେ ଫୁଲର ଦୋଳିରେ
ଝୁଲି ଝୁଲି ଖେଳି ଖେଳି ଶୀତଳ ସମୀରେ
ପରଶରେ ଓଠ ହେଲା ଅରୁଣିମା ବୋଳା
ରଖିଲି ଜୀବନ ନାମ ଏକ ରଂଗଶାଳା ।।୧।।

ବଙ୍କିମ ଚାହାଣୀରେ କୁଙ୍କୁମେ ସାଜି
ଅନେକ ଆସିଲେ ଗଲେ ସିନ୍ଦୂରେ ହଜି
ଖସିଲା ବୟସ ଯେବେ ନଇଁଗଲା ବେଳା
ଜୀବନଟା ହେଲା ମୋର ଏକ ପାନ୍ଥଶାଳା ।।୨।।



Digitized by srujanika@gmail.com

ହୃଦୟ ଭରା ମୋର ଗୀତରେ - ୭୨



ଜୀବିତ ମଣିଷ ଜୀବନ ଛବିକୁ ନେଇ
ଦିନେ ଯେଉଁ ଗୀତ ଲେଖି ଗାଇଥିଲି
ତାହା ଆଜି ମନେ ନାହିଁ ।।୦।।

ଭାଲେ ମୁଁ ନିଜକୁ ଗୀତ ଗାଇବାର
ଅତିଥି ଶିଳ୍ପୀ ଜଣେ
ଲେଖିବା ଗାଇବା ପୁଣି ଭୁଲିଯିବା
କିବା ତା'ର ଅଛି ମାନେ
ଦୁଃଖ ସୁଖର ଦୁନିଆଁ ଭିତରେ
ସବୁ ରହିଯିବା ସହି ।।୧।।

ଝଡ଼ରେ ହଜିବା ଲୁହରେ ଭିଜିବା
ଯେତେବେଳେ ଆସୁ ଯାହା
କେତେବେଳେ ଶୀତ କେବେ ବସନ୍ତ
କେବେ 'ଉହୁ' କେବେ 'ଆହା'
ଭାସିଯିବି ଆଜି ସାଗରେ ଅଧୀର
ନୀଳ ତରଙ୍ଗ ହୋଇ ।।୨।।



Digitized by srujanika@gmail.com

ହୃଦୟ ଭରା ମୋର ଗୀତରେ - ୭୪



Digitized by srujanika@gmail.com



ପ୍ରୀତି କାଦମ୍ବରୀ ପିଇ ବିମ୍ବାଧରୀ
ପୀତବାସେ ଡାକେ- ବଂଧୁରେ
ମନେ ଆଶା ଭାରି ଯିବାକୁ ସନ୍ତରି କାମନାର ନୀଳସିନ୍ଧୁରେ
ଶୁଣ ହେ- କଳି ପାଶେ ଅଳି ଗୁଂଜନୀ
ମଧୁର ବସନ୍ତ ପିକ କଣ୍ଠେ ଗୀତ ଶୁଣି ପୁହାଇବା ରଜନୀ ।।୦।।

ସୁରସ ବସନ୍ତ କାଳ ସମାଗତ ଧରାରେ ଭରିଛି ପୁଲକ
ସୁମନାର ହସ ହରି ମଧୁମାସ ମଳୟ ବିତରେ ମହକ
ମୁଁ ଏକ - ବିଳାସିନୀ ନବ କାମିନୀ
ଗୁରୁ ଗଉରବ ନ ମାନି ଧାଇଁଛି ବିତାଇବି ପ୍ରୀତି ଯାମିନୀ ।।୧।।

କନକ କିରଣ ପ୍ରସାରି ତପନ କମଳିନୀ ଓଠ ଛୁଇଁଲା
ବାରିଜାକ୍ଷୀ ମାନ ବରଜି ଏକାଳେ ଅଂଶୁମାଳୀ ମନ ମୋହିଲା
ଧରାରେ-ଧୀରେ ନଇଁ ଆସେ ରଜନୀ
ହାସେ ପରିହାସେ ନବପ୍ରୀତି ରସେ ମାତିଗଲେ ଯେତେ ସଂଗିନୀ ।।୨।।

ସକଳ ବିଭବ ଘେନି ବିଭାବରୀ ଶଶୀ ତାରକିତ ସଂଜରେ
କୁମୁଦ କଳିକୁ କହେ ହସି ହସି ଦେଖ ଦେଖ ପ୍ରୀତି କୁଂଜରେ
ମୋହନ- ପାଶେ ପାଶେ ରହି ମୋହିନୀ
ରସିକେ ରସାଇ ସରାଗେ ହସାଇ ବାହୁ ପାଶେ କଲା ବନ୍ଦିନୀ ।।୩।।



Digitized by srujanika@gmail.com



କୁଞ୍ଜେ ବିଳପେ ରାଈ
ଶ୍ରାବଣ ଆକାଶେ ଘନ ଘେରି ଆସେ
ଘନଶ୍ୟାମ ଆସେ ନାହିଁ ॥୦॥

ନୟନରୁ ନୀର ବହେ ଝର ଝର
ରାଧିକା ହୃଦୟ ବେଦନା ବିଧୁର
ଶ୍ୟାମ -କାହା ପୁରେ ଗଲେ ରହି ॥୧॥

ବିରହ ଯେ ଦିଏ ଘନ ଘନ ପୀଡ଼ା
ବିଫଳ ଆଜି ମୋ କେତକୀର ଜୁଡ଼ା
ସତେ - ଗଲେ କି ପାଷାଣ ହୋଇ ॥୨॥

ଲଳିତା କହେ ସେ ଲଳିତ ମୂରତି
କାହ୍ନୁ ସାଥେ କେହି କଳି ତ ନୁହନ୍ତି
କୋମଳ ହୃଦୟ ଗଲା କି କଠିନ ହୋଇ ॥୩॥



Digitized by srujanika@gmail.com



ମାନମୟୀ- ମୀନ ନୟନା
ଏ ମଧୁ ଲଗନେ ଘେନ ଶୁଭ କାମନା ।।୦।।

କବିତା'ଠୁ ତମ ତନୁ ଅତି କୋମଳ
ସରୋବରେ ସତେ ଏକ ନୀଳ କମଳ
ଅପରୂପା ଉର୍ବଶୀ ନାହିଁ ତୁଳନା ।।୧।।

ଭୀରୁ ଭୁରୁ ନାଚି ଉଠେ ଦେଖିଲେ ମତେ
ଅନେକ ଦିନର ପରିଚୟ କି ସତେ
ମରାଳ ଗମନା ଗତି ଆଗୋ ଲଳନା ।।୨।।

ବଧୂର ଆନତ ମୁଖ ସଜଳ ଆଖି
ତମ ନାମ ରଖିଲି ମୁଁ ତେଣୁ ମୀନାକ୍ଷୀ
ଧରାରେ ତୁମେ ହିଁ ଜଣେ ତୁମ ଉପମା ।।୩।।



Digitized by srujanika@gmail.com



କାହ୍ନୁ - ରାଧିକା- ପ୍ରୀତି ସାଧିକାରେ ପ୍ରାଣାଧିକା
କରୁଣା ନକର ଊଣା
ରାଈ - କାହିଁ ପାଇଁ ସଂକେ ଡାକ ନିତି କୁଂକେ
କାହ୍ନୁ ହେ - ତୁମ୍ଭଙ୍କୁ ଜଣା ॥୦॥

କାହ୍ନୁ - ବାଜେ ପାଞ୍ଚବାଣ ନାହିଁ ପରିତ୍ରାଣ
ତୁମ୍ଭ ଦରଶନ ବିନା
ରାଈ - ବାଜେ ଅପବାଦ ପଥେ ପରମାଦ
ବଂଶୀ ସୁର କରେ ବଣା ॥୧॥

କାହ୍ନୁ - ଶୁଣ ଗୋ ତରୁଣୀ ତୁମ୍ଭେ ମଧମଣି
ଗୋପେ ଯେତେ ଗୋପାଙ୍ଗନା
ରାଈ - ଶ୍ୟାମ ଅଙ୍ଗ ଦ୍ୟୁତି କରତେ ମୋ ଛାତି
ଏକି ଭାଗ୍ୟ ବିଡ଼ମ୍ବନା ॥୨॥

କାହ୍ନୁ - ଆଗୋ ଧବଳାଙ୍ଗୀ ଶ୍ୟାମବଂଧୁ ସଙ୍ଗୀ
ହେବାକୁ କରନା ମନା
ରାଈ - ନିତି ଆସେ କୁଞ୍ଜେ ପିଇବାକୁ ମୁଁ ଯେ
ପ୍ରୀତିର ପୀୟୂଷ ପଣା ॥୩॥



Digitized by srujanika@gmail.com



କୃଷ୍ଣ - ରାଇ ଗୋ - ଦେବି ଶିଖାଇ ବଂଶୀ
କୁଞ୍ଜ ବନେ ଆସ ମୋ ବନହଂସୀ
ରାଧା - ମାରେ ପଞ୍ଚବାଣ - ତୁମ ବଂଶୀସ୍ୱନ
ଦହେ ରତିପତି ଦିବସ ନିଶି ।।୦।।

କୃଷ୍ଣ - ଏଇ ବଂଶୀ ପ୍ରୀତି ଲଗାଏ
ରାଧା - ପତିବ୍ରତା ମତି ଭୁଲାଏ
କୃଷ୍ଣ - ନୀରସ ଲତାରେ ପଲ୍ଲବିତ କରେ
ରାଧା - ନିକୁଞ୍ଜ କାନନେ ପ୍ରୀତି ସୁଧା ଝରେ
କୃଷ୍ଣ - ତପତ କାଞ୍ଚନ ବର ବରନାଙ୍କୁ
ବାର ବାର ଦହେ ମଦନ ଆସି ।।୧।।

ରାଧା - ସପ୍ତ ସ୍ୱନ ପଞ୍ଚମ ରାଗ
ମନେ ବୋଲେ ଶ୍ୟାମାନୁରାଗ
କୃଷ୍ଣ - ଦୂରେ ବାଜୁଥିଲେ ନିକଟରେ ଲାଗେ
ମରମକୁ ଦହେ ପ୍ରୀତି ନିଶା ଜାଗେ
ରାଧା - ଶୀତଋତୁ ନୁହେଁ ତନୁ ଶିହରାଏ
ଶ୍ୟାମବଂଧୁ କର ତୁମରି ଦାସୀ ।।୨।।



Digitized by srujanika@gmail.com



ରାଈ - ସଖୀଲୋ- ଟିକେ ସମଝାଇ କହ
ଶ୍ୟାମବଂଧୁ ପାଇଁ ବଂଚନା ସହି
ବଂଚିବା ଦୁରୁବହ
ଶ୍ୟାମ - ସଖୀଲୋ - ଟିକେ ସମଝାଇ କହ
ରାଈ ପ୍ରୀତିସୁଧା ବିନା ଏ ବସୁଧା
ବିଷ ଲାଗେ ଅହରହ
ରାଈ/ଶ୍ୟାମ - ବଂଚିବା ଦୁରୁବହ... ସଖୀ
ବଂଚିବା ଦୁରୁବହ ।।୦।।

ଶ୍ୟାମ - ବହନାହିଁ ରୋଷ ନକର ନିରାଶ
ରାଈ - ହେ ରାସବିହାରୀ କର ପରିହାସ
ଶ୍ୟାମ/ରାଈ - ପ୍ରୀତି ଯେ ପୀୟୂଷ ପ୍ରୀତି ବିନା କିସ
ଅଛି ଦୁନିଆଁରେ କହ ।।୧।।

ରାଈ - ଲୋଡ଼େନା ସେ' ପ୍ରୀତି ଯେ' ଦିଏ ଯାତନା
ଶ୍ୟାମ - କପୋଳେ ସେ ମୋର ଚିତା ଗୋରଚନା
ରାଈ - ନ ଦେଖିଲେ ଝୁରେ ଦେଖି ଝର ଝର
ନୟନର ବାରିବହ...
କୃଷ୍ଣ - ପ୍ରୀତି ବିନା ସତେ ବଞ୍ଚିବା ଦୁରୁବହ ।।୨।।



Digitized by srujanika@gmail.com



ରାଧା - ମୋର ନାଗର
ଶ୍ୟାମ ନାଗର
ରସ ସାଗର
ଗିରିଧାରୀ
କୃଷ୍ଣ - ମୋର ନାୟିକା
ପ୍ରୀତି ସାଧିକା
ଗୋପ ରାଧିକା
ସୁନାଗୋରୀ ॥୦॥

କୃଷ୍ଣ - ରାଇ ରାଇ ନାମେ ନିରତେ ମୁରଲୀ ବାଜେ
ରାଧା - ସେଇ ସୁରେ ସୁରେ ତନୁ ମନ ମୋର ହଜେ
କୃଷ୍ଣ - ଚିର ବାଂଛିତ ଆଗୋ
ପରକୀୟା ବରନାରୀ ॥୧॥

ରାଧା - କାନ ଡେରି ଶୁଣ ଗୋପେ ବାଜେ ଅପବାଦ
କୃଷ୍ଣ - ଅଭିସାରିକା ଗୋ ଅପବାଦେ ଅଛି ସ୍ୱାଦ
ରାଧା - ହୁଏ ନିନ୍ଦିତ
ନିତି ଲାଂଛିତ
ବେଣୁଧାରୀ ॥୨॥



Digitized by srujanika@gmail.com



ଲଳିତେ ... ଆଗୋ ଲଳିତେ
ରାଈ କିଶୋରୀ ପରି
ଚଉଦ ଭୁବନେ ଅଛି କେ ସରି
ଚାରୁ ବିମ୍ବାଧରୀ
ପ୍ରୀତି ସୁଧା ଝରି
ମଧୁହାସେ ଦିଏ ମରମେ ଢାଳି ।।୦।।

ଅଳପକେ ଚାହିଁ ଦେଲେ ଅପାଙ୍ଗେ
ଅଙ୍ଗସାରା ଦହି ହୁଏ ଅନଙ୍ଗେ
କୁଂଜ ବନେ ବସି ଦିବା ଶର୍ବରୀ
ପଥ ଚାହେଁ କିଣା କିଙ୍କର ସରି ।।୧।।

ଯମୁନାକୁ ଗଲେ ଚରଣ ଚାଳି
ପଥେ ପଥେ ଫୁଟେ କମଳ କଳି
ଅଳି ହୋଇ ପାଶେ କରୁଛି ଅଳି
ନିରେଖିବି ନିତି ରୂପ ମାଧୁରୀ ।।୨।।

ସବୁ ଭୁଲି ସେଇ ଚନ୍ଦ୍ର ବଦନ
ଦେଖି ବରିନେବି ସୁଖ ମରଣ
କହିବ କହ୍ନାଇ ମରୁଛି ଝୁରି
ହାତ ଧରି ନେଉ ଆପଣା କରି ।।୩।।



Digitized by srujanika@gmail.com



ରାସ ରଙ୍ଗିନୀରେ
ପ୍ରୀତି ସଙ୍ଗିନୀରେ
ଆସ ପାହିଯାଏ ମଧୁ ଯାମିନୀରେ ।।୦।।

ଚାରୁ ଚମ୍ପକ ବରଣୀ ଚାହିଁ ଚାହିଁ ତୋ' ସରଣୀ
ରହି ରହି ଉଜାଗରେ କେତେ ରାତି ବିତିଲାଣି
ପ୍ରୀତି ପରମାଦ ବୋଲି ନଥିଲି ଜାଣିରେ ।।୧।।

ସଜାଇ ଶେଯ ସୁପାତି ବିରହେ ବିତିଲା ରାତି
ତୋହରି ପ୍ରୀତିରେ ମାତି ନାହିଁ ମୋର ଆନଗତି
କୁଞ୍ଜ ଦ୍ୱାରେ ଶୁଣା ଥରେ କଟୀ କଙ୍କିଣିରେ ।।୨।।

ପକ୍ୱ ବିମ୍ବାଧରୀ ବାମା ଅନୁରାଗେ ଅନୁପମା
ରମଣୀ ରତନ ରାମା ତୁହି ତୋହରି ଉପମା
କିଣା ଦାସେ ବାହୁପାଶେ କର ବନ୍ଦିନୀରେ ।।୩।।



Digitized by srujanika@gmail.com



ଖଂଜନାକ୍ଷୀ...
ଖୋଷାରେ ମଲ୍ଲୀ ଖୋସିଦେ'ରେ
ଖେଳି ପ୍ରୀତି ଖେଳା
ମନ କିଣି ନେ'ରେ ॥୦॥

ଛଳ କଳାରେ ନିପୁଣା
ବାଣୀ ତୋର ବୀଣାଜିଣା
ବରଜ-ରାଜର ମନ ମୋହି ନେ'ରେ ॥୧॥

ନୀଳ ତମାଳର କୁଞ୍ଜେ
ସରମ ବାଉଳା ସଞ୍ଜେ
ମରମ ବାଉଳା ହସ ହସି ଦେ'ରେ ॥୨॥

ଆସିଲେଣି କଳା କାହ୍ନୁ
ବଜାଇ ମୋହନ ବେଣୁ
କାମ ତୀର ମାରି ବୁକୁ ଚିରି ଦେ'ରେ ॥୩॥

ଏ ଫୁଲ ଫଗୁଣ ହୋଲି
ଅଭିସାରେ ତୁ ଛଇଳି
ରସି ରସାଇ ରସିକେ ବାନ୍ଧି ଦେ'ରେ ॥୪॥



Digitized by srujanika@gmail.com



ଶୀତ ଶିଶିରେ
କାଞ୍ଚନ ବରଣୀ ରାଇ କୁଞ୍ଜେ ଆସେ ଅଭିସାରେ ॥୦॥

ସେବତୀ ଫୁଲରେ ଗଭା ସାଜି ଦିଶେ ମନଲୋଭା
ରୂପସୀ ଉର୍ବଶୀ କିବା  ନିକୁଞ୍ଜେ ହୋଇଛି ଉଭା
ରୁଣୁଝୁଣୁ ନୂପୁର ଚାରୁ ହାସ ମଧୁର
ତମାଳ ତରୁ ତଳେ ଶୁଭୁଛି ବଂଶୀ ସ୍ୱର
କାନ୍ତ ମିଳନ ଆଶେ
କାନ୍ତା ଝୁରେ ଅଧୀରେ
ଶୀତ ଶିଶିରେ... ॥୧॥

ରସିକା ରମଣୀ ମଣି ଭାଷେ ସୁଧାଝରା ବାଣୀ
ଲଳିତା ବିଶାଖା ସଖୀ ଦେଖିଛ କି ବେଣୁପାଣି
ଚକୋରୀର ବିରହ ବୁଝେନା କି ଚକୋର
ସହିବା ଦୁରୁବହ ଅତନୁ ମାରେ ତୀର
ଭୀରୁ ଯୁଥିକା ଛାତି
ଥରେ ହିମ ନିଶିରେ
ଶୀତ ଶିଶିରେ ॥୨॥



Digitized by srujanika@gmail.com



ମନ୍ଦ ମନ୍ଦ ଗନ୍ଧବହ ଧରାଧାମେ ବହିଲା
ମଦନ କାମ  କମାଣ ତନୁ ମନ ଦହିଲା
ମନ୍ଦଗାମିନୀ ସହୀରେ ଆଡ଼ନେତ୍ରେ ଚାହିଁଲା
ମିଳନ ପିଆସୀ ବୋଲି ଇଙ୍ଗିତରେ କହିଲା ।।୦।।

ଚୂତ ବନେ କୁହୁତାନେ ଗୀତ ଗାଏ କୋକିଳ
ଫଗୁଣର ଫୁଲଭାରେ ବନ ଦିଶେ ଛବିଳ
ମଳୟର ଶିହରଣ ମନ କରେ ଚଞ୍ଚଳ
ବକୁଳର ବାସ କରେ ହୃଦୟକୁ ଆକୁଳ ।।୧।।

ମଧୁମାଳତୀ କୁଞ୍ଜରେ ମନେ ଭାଳି ଅତୀତ
ବିରହ ଅନଳେ ବାଳା ହୁଏ ଖାଲି ବ୍ୟଥିତ
ସଖୀ ମଦାଳସା ଭରେ ମନେ ଆଶା କିଞ୍ଚିତ
ମିଳନ ସୁଖରୁ କହେ ହେବୁନାହିଁ ବଞ୍ଚିତ ।।୨।।

ମୁକୁଳିତ କେଶବାସେ ଲାଜବତୀ ତରୁଣୀ
କୁଞ୍ଜବନେ ଅଭିସାରେ ଆସେ ହେମ ହରିଣୀ
ସଖୀ ପାଶେ କହେ ଗତ ମିଳନର କାହାଣୀ
ଅପଲକ ନେତ୍ରେ ଚାହେଁ ହାଣି ଚୋରା ଚାହାଣୀ ।।୩।।

ଉପବନେ କଳି ପାଶେ ଅଳି ମଧୁ ଗୁଂଜନ
ଚିତ୍ତ ଗହନରେ ବୋଳେ ପ୍ରୀତି ବାସ ଚନ୍ଦନ
ମନେ ମନେ କରି ବସେ ସଖା ପଦ ବନ୍ଦନ
ସତେ କି ଆସିବେ କୁଞ୍ଜେ ପ୍ରିୟ ଯଦୁନନ୍ଦନ ।।୪।।



Digitized by srujanika@gmail.com



ଆଗୋ ରସାଳସା
ମଧୁ ମଳୟ ମହକେ ଘାରେ ନିଶା ॥୦॥

ମନ ନିଧୁବନ ଯାଏ ଜଳି
ରସିକାରେ ତୋତେ ଭାଳି ଭାଳି
ଏ ମନ୍ଦ ଅନିଳ ଲାଗେ କି ଅନଳ
ମଉଳେ ମିଳନ ମଧୁ ଆଶା ॥୧॥

କ୍ଷଣ କରୁଛି ଅନୁଭବ
ବିହି ଦେଲା ଏହି ପରାଭବ
ପ୍ରୀତି ପଲଙ୍କରେ ବସାଇ ଅଙ୍କରେ
ତେଜିଗଲୁ କରି ଲୋକହସା ॥୨॥

ଚମ୍ପକ ବରଣା ସୁନାଗୋରୀ
କରିଥିଲୁ ଦିନେ ଚିତଚୋରି
ଆଜି ମୋର ଦୁଃଖ ହେଲାଣି ଅମାପ
କହିବାକୁ ପାଏ ନାହିଁ ଭାଷା
ଆଗୋ ରସାଳସା ... ॥୩॥



Digitized by srujanika@gmail.com



ମନ୍ଦ ମନ୍ଦ ଗନ୍ଧବହ ଧରାଧାମେ ବହିଲା
ମଦନ କାମ  କମାଣ ତନୁ ମନ ଦହିଲା
ମନ୍ଦଗାମିନୀ ସହୀରେ ଆଡ଼ନେତ୍ରେ ଚାହିଁଲା
ମିଳନ ପିଆସୀ ବୋଲି ଇଙ୍ଗିତରେ କହିଲା ।।୦।।

ଚୂତ ବନେ କୁହୁତାନେ ଗୀତ ଗାଏ କୋକିଳ
ଫଗୁଣର ଫୁଲଭାରେ ବନ ଦିଶେ ଛବିଳ
ମଳୟର ଶିହରଣ ମନ କରେ ଚଞ୍ଚଳ
ବକୁଳର ବାସ କରେ ହୃଦୟକୁ ଆକୁଳ ।।୧।।

ମଧୁମାଳତୀ କୁଞ୍ଜରେ ମନେ ଭାଳି ଅତୀତ
ବିରହ ଅନଳେ ବାଳା ହୁଏ ଖାଲି ବ୍ୟଥିତ
ସଖୀ ମଦାଳସା ଭରେ ମନେ ଆଶା କିଞ୍ଚିତ
ମିଳନ ସୁଖରୁ କହେ ହେବୁନାହିଁ ବଞ୍ଚିତ ।।୨।।

ମୁକୁଳିତ କେଶବାସେ ଲାଜବତୀ ତରୁଣୀ
କୁଞ୍ଜବନେ ଅଭିସାରେ ଆସେ ହେମ ହରିଣୀ
ସଖୀ ପାଶେ କହେ ଗତ ମିଳନର କାହାଣୀ
ଅପଲକ ନେତ୍ରେ ଚାହେଁ ହାଣି ଚୋରା ଚାହାଣୀ ।।୩।।

ଉପବନେ କଳି ପାଶେ ଅଳି ମଧୁ ଗୁଂଜନ
ଚିତ୍ତ ଗହନରେ ବୋଳେ ପ୍ରୀତି ବାସ ଚନ୍ଦନ
ମନେ ମନେ କରି ବସେ ସଖା ପଦ ବନ୍ଦନ
ସତେ କି ଆସିବେ କୁଞ୍ଜେ ପ୍ରିୟ ଯଦୁନନ୍ଦନ ।।୪।।



Digitized by srujanika@gmail.com



ଆଗୋ ରସାଳସା
ମଧୁ ମଳୟ ମହକେ ଘାରେ ନିଶା ।।୦।।

ମନ ନିଧୁବନ ଯାଏ ଜଳି
ରସିକାରେ ତୋତେ ଭାଳି ଭାଳି
ଏ ମନ୍ଦ ଅନିଳ ଲାଗେ କି ଅନଳ
ମଉଳେ ମିଳନ ମଧୁ ଆଶା ।।୧।।

କଷଣ କରୁଛି ଅନୁଭବ
ବିହି ଦେଲା ଏହି ପରାଭବ
ପ୍ରୀତି ପଲଙ୍କରେ ବସାଇ ଅଙ୍କରେ
ତେଜିଗଲୁ କରି ଲୋକହସା ।।୨।।

ଚମ୍ପକ ବରଣା ସୁନାଗୋରୀ
କରିଥିଲୁ ଦିନେ ଚିତ୍ତଚୋରି
ଆଜି ମୋର ଦୁଃଖ ହେଲାଣି ଅମାପ
କହିବାକୁ ପାଏ ନାହିଁ ଭାଷା
ଆଗୋ ରସାଳସା ... ।।୩।।



Digitized by srujanika@gmail.com

ହୃଦୟ ଭରା ମୋର ଗୀତରେ - ୮୮



ସଜନୀ... ସଜନୀ
ମୁଁ ଯେ ଶ୍ୟାମ ସ୍ନେହ ଅନୁରାଗୀ
ରହେ ଏକାନ୍ତରେ ଅଶାନ୍ତ ଚିତ୍ତରେ
ଦିବସ ଯାମିନୀ ଜାଗି ।।୦।।

ବଡ଼ ନିଦାରୁଣ ଏ ବସନ୍ତ କାଳ
ବକୁଳ ବଢ଼ାଏ ବିରହ ଅନଳ
ହେବି କିବା ସତେ ଯାଏ ନାହିଁ ପ୍ରତେ
ଘନଶ୍ୟାମର ସୋହାଗୀ ।।୧।।

ଦେଖ ବିଡ଼ମ୍ବନା ବିଶାଖା ଜାଣେନା
ମୁରଲୀ ପାଣିର ମନର ଠିକଣା
କେତେ ବା ସହିବି ବିରହ ଯାତନା
ସେଇ ବଂଶୀଧାରୀ ଲାଗି...
ସଜନୀ..
ମୁଁ ଯେ ଶ୍ୟାମ ସ୍ନେହ ଅନୁରାଗୀ ।।୨।।



Digitized by srujanika@gmail.com



ମାନିନୀରେ
ମନ୍ଦ ଗାମିନୀରେ
ଛନ୍ଦ ତେଜ ସହି - ଚାରୁହାସିନୀରେ ॥୦॥

ହେ ବରବରନା ବରଜ ତୋ ମାନ
ବାରିଜାକ୍ଷୀ ତନୁ ଦହୁଛି ମଦନ
ବଞ୍ଚିବା ତୋ ବିନା ମରଣ ସମାନ
ପ୍ରୀତି ପୟୋନିଧି ମିନତି ମୋ ଘେନ
ଆସ ବଧୂବେଶେ ମଧୁ ଯାମିନୀରେ ॥୧॥

ବିଳାସ କୁଶଳା ଚାରୁ ଚନ୍ଦ୍ରକଳା
ବିରହର ଭାରେ ବୁଡ଼ିବ ମୋ ଭେଳା
ବରଜେ ତୋ' ସରି ଅଛି କେଉଁ ବାଳା
ଖେଳିବ ମୋ ସାଥେ କୁଞ୍ଜେ ପ୍ରୀତି ଖେଳା
କର କୃପା ବାରେ କଞ୍ଜ ନୟନୀରେ ॥୨॥



Digitized by srujanika@gmail.com



ମୋହନ ହସୁଛି ମନ୍ଦିରେ
ମୟୂର ମୁକୁଟ ଦିଶେ ଝଟ ଝଟ
ବାହୁପାଶେ ରାଇ ବନ୍ଦୀରେ ॥୦॥

ଅଧରେ ବଂଶୀ ବାଜେ ରହି ରହି
ହସେ ପ୍ରୀତି ସାଥୀ ମାନମୟୀ ରାଈ
ସଇ ସୁନା ଗୋରୀ ବରଜ କିଶୋରୀ
ମମତାରେ ହୁଏ ଛନ୍ଦିରେ ॥୧॥

ନୀଳ କଳେବର ଶ୍ୟାମଳ ବରଣ
ବଙ୍କିମ ଠାମ କମଳ ଚରଣ
ବ୍ରଜ ବନଚାରୀ ଗୋପୀ ଗଳାମାଳି
କୋଟି କାମ ପ୍ରଭା ନିନ୍ଦିରେ ॥୨॥



Digitized by srujanika@gmail.com



ଶ୍ୟାମସୁନ୍ଦର
ଲଗାଏ କେତେ ସେ ହୁନ୍ଦର
ନବ ତମାଳର ଶିରୀ ଗୋପୀଜନ ମନୋହାରୀ
ବୃଷଭାନୁ ଜେମା ଗଳାହାର ।।୦।।

ଉଭା କଦମ୍ବର ମୂଳ
ଗଳେ ବନଫୁଲ ମାଳ
ଶିରେ ଶୋଭେ ଶିଖୀଚୂଳ
କଟୀରେ ପୀତ ଦୁକୁଳ
ନୟନରେ ମାରେ ହସ ତୀର ।।୧।।

ସଙ୍ଗେ ଗୋପ ବତ୍ସା ଧେନୁ
ଅଧରେ ମୋହନ ବେଣୁ
ନୀଳ ଇନ୍ଦିବର ତନୁ
ପାଶୋର ନଯାଏ ମନୁ
ତିନିଭଙ୍ଗୀ ଠାଣି ମନୋହର ।।୨।।



Digitized by srujanika@gmail.com

ହୃଦୟ ଭରା ମୋର ଗୀତରେ - ୯୨



କେଳି କୁଞ୍ଜେ କଳାକାହ୍ନୁ ଅଭିସାରେ ଆସିଲେ
ତ୍ରିଭଙ୍ଗୀ ଭଙ୍ଗୀରେ ଚାହିଁ ଢଳି ଢଳି ନାଚିଲେ ।।୦।।

ନ ଦେଖି କିଶୋରୀମଣି ଆକୁଳରେ ଝୁରିଲେ
ଯମୁନାର କୂଳେ ରାଈ ପଦଚିହ୍ନ ଖୋଜିଲେ
କେଳି କୁଞ୍ଜ ହତଶିରୀ ଦେଖି ଦମ୍ଭ ହାରିଲେ
ମୃଦୁ ମଧୁ ବଂଶୀ ସୁରେ ରାଈ ରାଈ ଡାକିଲେ ।।୧।।

ରାଈ ଗୋ - ରାଈ ଗୋ
ତନୁ ଦହୁଛି ଅତନୁ ବାଣ
ସତେ କି ତେଜିବି ପ୍ରାଣ
ଡାକୁଚି ଆସ ମୋ ରାଣ - ଅଧୀରେ ।।୨।।

ରାଈ ଗୋ ରାସେଶ୍ୱରୀ
ବିରହରେ ମରେ ଝୁରି
ପାରିବୁ କି ଭୁଲି ଶ୍ୟାମ ପ୍ରୀତିରେ ।।୩।।



Digitized by srujanika@gmail.com



ଯାଅନା - ଯାଅନା -
ବନ୍ଧୁରେ ଶ୍ୟାମସୁନ୍ଦର
ଗଲେ ଚଳି ମଧୁପୁର
ଗୋପ ଶିରୀ ତୁଟିଯିବ ସିନା
ତୋ ପ୍ରିୟ ସଖା ସୁଦାମ - ସୁମରି ତୋ ଗୁଣଗ୍ରାମ
ଝୁରି ଝୁରି ମରିବ ତୋ ବିନା
ଯାଅ ନା - ଯାଅ ନା ।।୦।।

ଦେଖ ଝୁରେ ଗଛଲତା ପାଇ ମନେ ଗୁରୁ ବ୍ୟଥା
ବୁଝ ସାଥୀ ମରମ ବେଦନା
ଝୁରି ହେବ ତନୁ କ୍ଷୀଣ ପିଣ୍ଡେ କି ରହିବ ପ୍ରାଣ
ବିଚ୍ଛେଦର କଷଣ ବୁଝନା ।।୧।।

ନଦୀ କୂଳେ ଗୀତ ଗାଇ ବୁଲିବ କେ ବେଣୁ ବାଇ
କୃଶ ହେବ ଏ ନୀଳ ଯମୁନା
ବିରହରେ ବନ ବିଥୀ ଝୁଲି ପଥେ ଝୁରୁଛନ୍ତି
ଏ ସାଥୀର ମନା କର ଘେନା
ଯାଅ ନା - ଯାଅ ନା ।।୨।।



Digitized by srujanika@gmail.com



କାହିଁକି ନିଦାରୁଣ ଆଗୋ
ଏଣୀ ନୟନା
ଦୀନ ଜନେ କରୁଣା କର
ନୋହି ବିମନା ।।୦।।

ବିରହେ ରାସ ରାତି
ବିଳପି ଯାଏ ବିତି
ବିନତି କର ଘେନା - ଆଗୋ ବିଧୁବଦନା ।।୧।।

ସୁନା ବରଣ ରୂପ
ପାଇଁ ସାଜି ମଧୁପ
ତୋହରି ଉପବନେ ଘୂରି ମରେ ନବୀନା ।।୨।।

ଲଳନା ତୋ ଛଳନା
ରସରାଜ ବୁଝେନା
ନାଗରୀ ଏକା ସିନା - ତୁହି ତୋ'ର ତୁଳନା ।।୩।।



Digitized by srujanika@gmail.com



ସଜନୀ କହିବୁନି କାହାକୁ ମୋ ରହିଲା ରାଣ
ଶ୍ୟାମବଂଧୁଙ୍କୁ କରିଛି - ବଂଧୁବରଣ ॥୦॥

ସେହି ମୋହନ ମୂରତି
ହସିଦେଲେ ଦନ୍ତ ପନ୍ତି
ମୁକୁତା ନିନ୍ଦି ସଂପତ୍ତି
କେଡ଼େ ଶୋଭନ ॥୧॥

କପୋଳେ କୁଙ୍କୁମ ଚିତା
ନୟନରେ କହେ କଥା
ପଦକଂଜେ ଦାସୀ ହୋଇ
ନେଲି ଶରଣ ॥୨॥

ଦେଖିଲେ ଝାଉଁଳେ ଲାଜେ
ନ ଦେଖିଲେ ଝୁରି ଖୋଜେ
ପରଶେ ପ୍ରାଣ ଶୀତଳ -
ହସେ ଜୀବନ ॥୩॥



Digitized by srujanika@gmail.com



ଆଗେ ପ୍ରିୟସହୀ – ପ୍ରିୟମ୍ବଦା
ଶ୍ରୀରାଧା ପାଇଁ ମୋ ପ୍ରେମ ଅଧା
ଆଗୋ ପ୍ରିୟମ୍ବଦା ।।୦।।

ତାହା ପାଇଁ ସିନା ପ୍ରୀତି ପରମାଦ
ମୋ ପାଇଁ ତା' ପ୍ରୀତି ପରମ ସଂପଦ
ଅଙ୍ଗ ଭୂଷଣ ମୋ ଅପନିନ୍ଦା ।।୧।।

ପୀନ ପୟୋଧରୀ ପଦରେ ଜୁହାରି
କହ ଅଛି ତା'ର ପଥ ଅନୁସରି
ଭୁଲିବ ମୋ' ଲାଗି ଯେତେ ବାଧା ।।୨।।

ବ୍ରଜପୁରେ ଏକା ସେଇ ବ୍ରଜେଶ୍ୱରୀ
ମୋ ହୃଦ ମନ୍ଦିରେ ସେ ଯେ ଅଧୀଶ୍ୱରୀ
ବୁଝାଅ ବିଶାଖା ଅନୁରାଧା ।।୩।।



Digitized by srujanika@gmail.com



ରସରାଜ ଗୀତିକୁଞ୍ଜ ପ୍ରକାଶିତ ରସରାଜଙ୍କ ଅନ୍ୟାନ୍ୟ ଗ୍ରନ୍ଥ

ଦୁଇଟି ଆଖିର କବିତା (ଆଧୁନିକ ଗୀତି)

ନିବେଦନ (ଭକ୍ତି ଗୀତି)

ମେଘ ଫଗୁଣ (ଋତୁ ଗୀତି)

ବନ୍ଧୁଭରା ବସୁନ୍ଧରା (ଦେଶାତ୍ମବୋଧ ଗୀତି)

ଠିଆ ଫୁଟି ନାରଙ୍ଗ (ପଲ୍ଲୀ ଗୀତି)

ଚିତ୍ର ଗୀତି (ଚଳଚ୍ଚିତ୍ର ଗୀତି)

ପ୍ରୀତି ପ୍ରଜାପତି (ଆଧୁନିକ ଗୀତି)

ଗୀତରେ ଗୀତରେ ଗପ (ସଙ୍ଗୀତ ରୂପକ)

ରସରାଜ ଗୀତ ବିଚିତ୍ରା (ସୁନିର୍ବାଚିତ ଗୀତି)

ରସରାଜ୍ ଗୀତ୍ ବାହାର୍ (ସୁନିର୍ବାଚିତ ଗୀତୀର ହିନ୍ଦୀ ଅନୁବାଦ)

ଗୀତି ଚଉତାଳି (ଆଧୁନିକ ଗୀତି)

ସଜଳ ସ୍ମୃତି (ଆଧୁନିକ ଗୀତି)

ଚର୍ଚ୍ଚାର ଚୌହଦୀରେ ଗୀତି କବିତା (ଆଲୋଚନା ଗ୍ରନ୍ଥ)

-ପ୍ରକାଶକ

Digitized by srujanika@gmail.com



ଆଧୁନିକ ଓଡ଼ିଆ ଗୀତି ସାହିତ୍ୟ ଜଗତର ଜଣେ କିମ୍ବଦନ୍ତୀ ପୁରୁଷ ରସରାଜ। ତାଙ୍କ ରଚିତ ଆଧୁନିକ, ପଲ୍ଲୀ, ଭକ୍ତି, ଗନ୍ତ୍ର, ଚଳଚ୍ଚିତ୍ର ଗୀତି, ସଙ୍ଗୀତ ରୂପକ ଇତ୍ୟାଦି ଅନେକ ଗୀତିପୁଷ୍ପ ଓଡ଼ିଆ ଗୀତି ସାହିତ୍ୟକୁ ସୁରଭିତ କରିଛି। ସାଧନାର ସ୍ୱୀକୃତି ସହ ବିନମ୍ରତା, ବନ୍ଧୁତା, ସ୍ନେହ, ପ୍ରୀତି, ଶୁଭେଚ୍ଛାରେ ସମସ୍ତଙ୍କ ମନ ମୋହି ଆଜି ସେ ପଦାର୍ପଣ କରିଛନ୍ତି ୮୫ ବର୍ଷ ବୟସରେ। ଏହି ଗୀତିଗ୍ରନ୍ଥ ତାଙ୍କ ସାହିତ୍ୟିକ ଜୀବନର ଜୟଯାତ୍ରାର ଏକ ସ୍ମରଣୀୟ ଅଧ୍ୟାୟ।

– ପ୍ରକାଶକ



Regn. No. 1975/2001

Digitized by srujanika@gmail.com